# ଅବୋଲକରା କାହାଣୀ

## ଚତୁର୍ଥ ଭାଗର

## ସୂଚୀପତ୍ର





# ଅବୋଲକରା କାହାଣୀ



## ଚତୁର୍ଥ ଭାଗ

କଥାରମ୍ଭେ ମହାଦେବଂ ଗଣେଶଂ ବିଘ୍ନନାଶନଂ ।
ଦେବୀଂ ସରସ୍ୱତୀଂ ଚୈବ ନମାମି ଶିରସାଞ୍ଜଳୀ ।

କଥାମିମାଂ ଯଃ ଶୃଣୁତେ ପୁରାତନୀଂ
ସୁନୀତିଗର୍ଭାଂ ହୃଦୟାଭିନନ୍ଦନୀ ।
ସ ସର୍ବଦୁଃଖାନ୍ୟପହୃତ୍ୟ ମୋଦତେ
ନବାମ୍ବୁବାହ ଧ୍ୱନିଭର୍ଯଥା ଶିଖୀ ।

### ଜିଭଉପୁଡ଼ା ସୌଦାଗର କଥା

ଶ୍ରୋତାମାନେ ଅମ୍ଭ କୃତ ଅବୋଲକରା କାହାଣୀର ତୃତୀୟ ଭାଗ ଶେଷ ପର୍ଯ୍ୟନ୍ତ କଥାଗୁଡ଼ିକ ଶୁଣିଥିବେ । ଚତୁର୍ଥ ଭାଗରେ ଯେ ସବୁ କଥା ସଂଗୃହୀତ ହୋଇଥିଲା, ତାହା କେତେକ ଅସୁବିଧା ବଶତଃ ପ୍ରକାଶ କରିପାରି ନ ଥିଲୁଁ । ବର୍ତ୍ତମାନ କେତେକ ଗ୍ରାହକଙ୍କ ଅନୁରୋଧ କ୍ରମେ ପ୍ରକାଶ କରୁଅଛୁଁ—ଏହି ନୀତିଗର୍ଭକ ଓ ମନମୋଦକାରିଣୀ କଥାଗୁଡ଼ିକୁ ଆପଣମାନେ ଆଦର ସହିତ ଶ୍ରବଣ କଲେ ଅମ୍ଭର ପରିଶ୍ରମ ସଫଳ ହେବ ବୋଲି ଆଶା କରୁଁ ।

ସାମନ୍ତ ବ୍ରାହ୍ମଣ ଏବଂ ଅବୋଲକରା ଦୁହେଁଯାକ ଉତ୍ତରାଞ୍ଚଳ ତୀର୍ଥସ୍ଥାନ ବୁଲି ବୁଲି ତୀର୍ଥଜଳ ଧରି ସେତୁବନ୍ଧ ରାମେଶ୍ୱର ଯିବାପାଇଁ ବାହାରିଲେ । ଯାଉ ଯାଉ ବାଟରେ ଅନେକ ଗାଁ ଗଣ୍ଡା, ସହର, ମଫସଲ, ନଈ, ନାଳ, ଦେଶ, ବିଦେଶ, ବନ, ପର୍ବତ

ଯାଉଥାଉ ଅନ୍ତ୍ରଦେଶରେ ପହଞ୍ଚିଲେ । ବେଳ ଅସି ଦୁଇପ୍ରହର ହେଲଣି, ବାଟ ଗ୍ଲଲ ଗ୍ଲଲ ହାଲିଆ ହୋଇଅଛନ୍ତି; ତେଣୁ ଅଭ ଯାଇ ନ ପାରି ମନୋହରପୁର ନାମକ ଗୋଟିଏ ଗ୍ରାମର ପୋଖରୀକୂଳ ନିକଟ ଦେବାଳୟରେ ବସିପଡ଼ିଲେ । ସେଠାରେ ଲୁଗାପଟା ଥୋଇ ସାମନ୍ତ ଅବୋଲକରାକୁ କହିଲେ, ତୁ ଟଙ୍କାଟିଏ ନେଇ ଏହି ଗ୍ରାମର ବଜାରକୁ ଯା, ସଉଦାପତ୍ର କିଣି ଆଣିବୁ । ମୁଁ ସ୍ନାନସଂଧ ନିତ୍ୟକର୍ମ କରୁଅଛି । ତୁ ଅଣିଲ ଅସିଲେ ରୋଷେଇବାସ କରି ଖିଆପିଆ କରିବା । ସାମନ୍ତ ଏହା କହି ସ୍ନାନ କରିବାକୁ ଗଲେ । ଅବୋଲକରା ଟଙ୍କା ନେଇ ବଜାରକୁ ଗଲା । ଯାଉ ଯାଉ ବାଟରେ ଦେଖିଲା ଯେ ଯୋଡ଼ିଏ ବର ଓସ୍ତ ଗଛ ଏକାଠି ଅଛି । ମୂଳରେ ଗୋଟିଏ ପଥର ଗୃନ୍ଦଣୀ ବନ୍ଧା ହୋଇଅଛି । ସେ ଗୃନ୍ଦଣୀର ଐଶାନ୍ୟ କୋଣରେ ଗୋଟିଏ ଶଙ୍ଖ ମଲମଲ ପଥର ଖମ୍ବ ଗଡ଼ା ହୋଇଅଛି । ସେ ଖମ୍ବ ଉପରେ ଗୋଟିଏ ପଥର ନିର୍ମିତ ବୁଢ଼ା ମନୁଷ୍ୟ ବସି ନିଜର ଜଙ୍ଘକୁ ନିଜ ହାତରେ ଉପୁଡ଼େଇ ମରି ଯାଇଛି । ଏହା ଦେଖି ଅବୋଲକରା ସ୍ତ୍ରୀଙ୍କୁ ତାକୁ ପଚାରିଲା, ଏପରି ଘଟଣା କିଏ କରିଅଛି ? ସେମାନେ କହିଲେ, ଅମେ ଏଥିର କାରଣ କହି ପାରିବୁ ନାହିଁ । ମାଙ୍କ ଶୁଣିଅଛୁ ଯେ ସୌଦାଗର ବୁଢ଼ା ଜଙ୍ଘ ଉପୁଡ଼େଇ ମରିଥିଲା ବୋଲି ତାର ପୁଅ ବୋହୂମାନେ ତାର ଛବି ଏଠାରେ ବସାଇ ଅଛନ୍ତି । ଏ କଥା ଶୁଣି ଅବୋଲକରା ତରତର ହୋଇ ଯାହା କିଛି ସଉଦାପତ୍ର ଚାରି ଛ' ଅଣାର କିଣି ଛନଛନ ହୋଇ ଲେଉଟି ଅସି ସାମନ୍ତଙ୍କୁ ବୋଇଲା, "ଗୋସାଇଁ, ଏହି ଗ୍ରାମ ବାହାର ବର ଓସ୍ତ ମୂଳରେ କିଏ ଉପୁଡ଼ା ପଥର ପ୍ରତିମାଟାଏ କିଏ କାହିଁକି ବସାଇ ଥିବେ, ସେଥିର ମୂଳ କାରଣ ମୋତେ କହିଦିଅ । ନୋହିଲେ ତୁମ ଲୁଗାପଟା ତୁମେ ନିଅ, ମୋ ଶିକା ବାଙ୍ଗୀ ନେଇ ମୋ ବାଟେ

ମୁଁ ଯାଉଛୁ ।" ସାମନ୍ତ ତ ତାର ଗୁଣ ଜାଣନ୍ତି, ତେଣୁ ଅଳ୍ପ ହସ ହସ ହୋଇ ବୋଇଲେ, "ହେଉ ଦମ୍ଭଧର, ଘୋଷେଇ ବସାଇ ଦେଇ କହନ୍ତା ଯେ ଘୋଷେଇ ବଢ଼ିବ କଥା ଛୁଡ଼ିବ ।" ଅବୋଲକରା ଏହା ଶୁଣି ଟିକେ ଥୟ ହୋଇ ବସିଲା । ସାମନ୍ତ ଚୁଲ୍ଲୀ ଚଢ଼କା କରି ଭାତ ବସାଇ ଦେଇ ବୋଇଲେ, ପଡ଼ା କମ୍ବଳ ପୋତ ଛଡ଼ା, ବସ ଅବୋଲକରା ଶୁଣ କଥା । ଅତି ପୂର୍ବକାଳେ ଏହି ଗ୍ରାମରେ ବିଦ୍ୟାଧର ବୋଲି ଜଣେ ସୌଦାଗର ଥିଲା । ସେ ଜାତରେ ବୈଶ୍ୟ ବଣିଆ, ତାର ସାତବୋହୂ ଥାନ୍ତି, ସାଧବାଣୀ ବୁଢ଼ୀ ଥାଏ । ନିଜକୁ ମିଶାଇ ଘରେ ଷୋଳଜଣ ହୋଇଥାନ୍ତି । ସବା ସାନବୋହୂଟି ଗୋଟିଏ ବଡ଼ଘର ଝିଅ, ତାକୁ ସମସ୍ତେ ବଡ଼ ଆଦର କରି ଅତି ସୁଖରେ ରଖିଥାଆନ୍ତି । ଦଇବରେ ସେ ସାତ ବୋହୂଯାକର କାହାରି କିଛି ପୁଅ ଝିଅ ନ ଥାଏ । ଘରେ ଅଚଳାଚଳ ସମ୍ପତ୍ତି ପୂରି ରହିଥାଏ । ଗାଈଗୋରୁ ଛେଳି ମଇଁଷି, ବାଲବାଡ଼ି, ତୋଟା ପଦର, ଧାନ ଗୁଡ଼ଳ, ଟଙ୍କା ସୁନା, ହୀରା ନୀଳା, ମୋତି ମାଣିକ୍ୟ ଅକଳନା ଥାଏ । ସାତ ପୁଅଯାକ ବୋଇତ ବଣିଜ କରି ଦ୍ୱୀପ ଦ୍ୱୀପାନ୍ତରରୁ ଧନ ଲାଭ କରି ଆଣୁଥାନ୍ତି । ସେ ଦେଶର ରଜା ଓଗେର ସବୁ ଲୋକେ ସେହି ସୌଦାଗର ବୁଢ଼ାର ବଶମ୍ବଦ ହୋଇ ରହିଥାନ୍ତି । ସେହିପରି କେତେକାଳ ଗଲାପରେ ତାର ସାନବୋହୂଟି ଗର୍ଭବାସ ହେଲା । ତାଙ୍କୁ ତ ରଜାଘର ଝିଅ ବୋଲି ବଂଶଯାକ ଆଦର କରୁଥିଲେ, ପୁଣି ସେ ଗର୍ଭବତୀ ହେବାରୁ ଅତୁଳ ଅଧିକରେ ଆଦର କଲେ । ମାତ୍ର ବୁଢ଼ା ଏ କଥା ଜାଣି ନ ଥାଏ । ଏହି ସମୟରେ ତାର ସାତପୁଅଯାକ ବୋଇତରେ ମାଲମତା ବୋଝେଇ କରି ବେପାର କରିବା ପାଇଁ ବୁଢ଼ାଠାରୁ ଅନୁମତି ନେଇ ଦ୍ୱୀପାନ୍ତରକୁ ଚାଲିଗଲେ । ଘରେ ସାତବୋହୂ ଏବଂ ବୁଢ଼ା ବୁଢ଼ୀ ଥାନ୍ତି । କେତେଦିନ ଗଲାପରେ ଦିନକର

କୁଅନ୍ତୁ ଜଣେ ଭଲ ଜଉତଷ ଆସି ସେ ବୁଢ଼ା ପାଖରେ ପହଞ୍ଚିଲା । ବୁଢ଼ା ତାର ଗୁଣ ଗ୍ରାମ ବୁଝାସୁଝା କରି ଜାଣିଲା, ସେ ଜଣେ ଅଛ ଭଲ ଜଉତଷ । ତେଣୁ ତାକୁ ବସା ସଞ୍ଜା ଦେଇ ସେ ଦିନକ ରଖିଲା । ଅରଦିନ ବଡ଼ ସକାଳୁ ଉଠି ସେ ଜଉତଷକୁ ଏକାନ୍ତ ସ୍ଥାନରେ ବସାଇ ପଚାରିଲା—ଭଲା ତୁମେ ଗଣନା କରି କହିଲ । ଦେଖୁଛ ତ ମୋର କେତେ ସମ୍ପତ୍ତି ହୋଇଛି । ଏହା ସବୁ ଆମ ଘରର କାହା କର୍ମରେ ହୋଇଛି, ଆଉ ଆମେ ସମସ୍ତେ କାହା ଭାଗ୍ୟ ବଳରେ ଏତେ ବଡ଼ ଭାଗ୍ୟ ଭୋଗ କରୁଅଛୁ । ବୁଢ଼ା ଏପରି ପଚାରିବାରୁ ଜଉତଷ କୋଠୀ କାଟି ଲଗ୍ନ ବେଳ ନିଶ୍ଚୟ କରି କହିଲା—ତୁମ୍ଭ ଘରେ ଯେତେ ଲୋକ ଅଛ ସେ ମଧ୍ୟରୁ କାହାର ହେଲେ ଗୋଟିକର କପାଳରେ ଏ ସମ୍ପତ୍ତି ହୋଇନାହିଁ । କେବଳ ଗୋଟିଏ କାଳ ବାଳକ ତୁମ ଘରେ ଅଛି; ତା ରି ଭାଗ୍ୟରେ ତୁମେ ସମସ୍ତେ ଭାଗ୍ୟ ଭୋଗ କରୁଛ । ଏହା ଶୁଣି ବୁଢ଼ା ଟିକଏ ଅଶ୍ଚର୍ଯ୍ୟ ହେଲା ପରି କ୍ଷଣେ ମୌନ ହୋଇ କହିଲା, ଅଚ୍ଛା ତୁମେ ଯାଅ । ଆଉ ପନ୍ଦର ଦିନ ଗଲ୍ଲେ ଆସିବ । ମୁଁ ସେତେବେଳେ ତୁମ୍ଭଙ୍କୁ ଯାହା କିଛି ମେଲାଣି ବିଦାୟ ଦେବି । ଏପରି କହିବାରୁ ଜଉତଷ ଫେରିଯାଇ ମନେ ମନେ ବିଚାରିଲା, "ଲାଞ୍ଚ ମିଛ ମେଲାଣି, ହାତରେ ପଡ଼ିଲେ ଜାଣି ।" ଆଉ ମଧ୍ୟ ବଡ଼ ପୁରୁଷେ କହି ଅଛନ୍ତି—"ଲୁବ୍ଧସ୍ୟ ବିତ୍ତଂ ରଣଶୂରଶସ୍ତ୍ରଂ ଅଭ୍ୟଗ୍ର ଶାର୍ଦ୍ଦୁଳ ନଖାବଳୀ ଚ । ପତିବ୍ରତାୟାଃ କୁଚକୁମ୍ଭଯୁଗ୍ମ ଗତ୍ୱାନ୍ତି ଦତ୍ତ୍ୱାନ ମୃତାନ୍ତରେ ଚ ।" ଲୋଭୀ ଲୋକର ଧନ, ବୀରପୁରୁଷର ଶସ୍ତ୍ର, ପ୍ରତାପୀ ବାଘର ନଖ ଏବଂ ପତିବ୍ରତାର କୁଚ ଏହି ଗୁଡ଼ିକଥା ସେମାନେ ମଲାପରେ କିଏ ହେଲେ ନେବ ସିନା, କିନ୍ତୁ ଜୀଇଥିବା ଯାଏ ସେ କାହାକୁ ଦେବେ ନାହିଁ, କି କିଏ ନେଇ ପାରିବ ନାହିଁ । ସୌଦାଗର ତ କିଛି ଦେଲା ନାହିଁ । ଦେଖିବା

କହୁଛି ତ, ଆଜ ଥରେ ପନ୍ଦର ଦିନ ଘୁଞ୍ଚି ଅସିବ । ଇତ୍ୟଦି ଏପରି ପାଞ୍ଚ ତା ସୁଖେ ସେ ଗଲା । ଏଣେ ସୌଦାଗର ବୁଢ଼ୀ ମନେ ମନେ ବିଚାର କଲା, ମୋ ଘରେ ଏତେ ମନୁଷ୍ୟ ଥାଇ ଗୋଟିକର କପାଳରେ ହେଲେ ଧନ ନାହିଁ । ବାଲେଇଟାର କପାଳରେ ଯେବେ ଆମେ ଖାଇ ପିଇ ରହୁଛୁ ତା ହେଲେ ଆମର ବଡ଼ ପଣିଆ କେତେଦିନ ରହିବ ? ବାଲେଇଟାକୁ କିଏ ଖାଇଗଲେ ଗଲା, ନେଇଗଲେ ଗଲା; ଅଥବା ସେ କୁଆଡ଼େ ନ ଯାଇ ରହିଲେ ମଧ ଅଉ ବର୍ଷେ ଦୁଇ ଗୃହଟାରେ ମରିଯିବ । ତେଣିକି ଆମେ ଦୁଃଖ ପାଇବାର କଥାଟି ନିଶ୍ଚୟ । ଏଥିପାଇଁ ବଡ଼ପୁରୁଷେ କହିଅଛନ୍ତି—"ଈର୍ଷୀ ଘୃଣୀତ୍ୱସନ୍ତୁଷ୍ଟକୋଧେନ ନିତ୍ୟ ଶଙ୍କିତଃ । ପରଭାଗ୍ୟୋପଜୀବୀ ଚ ଷଡ଼େତେ ଦୁଃଖଭାଗିନଃ ।" ଏଣୁ ଯେ ପର ଭାଗ୍ୟରେ ବଞ୍ଚିଥାଏ, ଶେଷକୁ ତାର ଦୁଃଖଟି ଥୁଆ ହୋଇଥାଏ । ଯାହାହେଉ—"ବିଚାର କାର୍ଯ୍ୟ କରୁଥିଲେ, ପ୍ରମାଦ ନ ପଡ଼େଟି ଭଲେ ।" ଏ ବାଲେଇଟିର କପାଳରେ ଯେବେ ଏଡ଼େ ବଡ଼ ଭାଗ୍ୟ ଅଛି, ତେବେ ମୁଁ ଏହାକୁ ମାଂସ କରି ଖାଇଦେଲେ ସେ ଭାଗ୍ୟଟା ଅସି ନିଶ୍ଚେ ମୋଠାରେ ରହିଯିବ । ଏମନ୍ତ ବିଚାର କରି କାହାକୁ କିଛି ନ କହି ସେ ବାଲେଇଟିକି ଦୁଧ ଭାତ ଗ୍ରାସେ ଖାଇବାକୁ ଦେଇ ତାକୁ ଗୁପତ ସ୍ଥାନରେ ମାରି କଟାକଟି କରି ମାଂସଯାକ ପତ୍ରପତରେ ପୁଡ଼ିଆ ବାନ୍ଧି ଯତ୍ନରେ ରଖି ହାଡ଼ ଗୋଡ଼ ଚମ ଆଦ ଯାହା କିଛି ଥିଲା ସେ ଗୁଡ଼ିକ ବଗିଚା ଭିତରେ ଗାତ ଖୋଳି ଅଣ୍ଟେ ଗମ୍ଭୀରରେ ପୋତିଦେଲା । ସେଠାରୁ ଅସି ମାଂସ ପୁଡ଼ିଆଟି ନେଇ ସାଧବାଣୀ ବୁଢ଼ୀକି ଏକାନ୍ତ ସ୍ଥାନକୁ ଡାକିଅଣି କହିଲା, ଦେଖ୍, ଏ ମାଂସତକ ଖାଇଲେ ମୋର ଅଣ୍ଟୁ ଗଣ୍ଠି ବାତ ଘୁଞ୍ଚିଯିବ ବୋଲି ବୈଦ୍ୟ କହିବାରୁ ମୁଁ ବହୁ କଷ୍ଟରେ କାଠିଙ୍ଗା ଗଡ଼ାପୁର ମାଳରୁ ଅଣାଇ ଅଛି । ତୁ ଏହାକୁ ନିଜେ ରାନ୍ଧି ମୋତେ ଅଣିଦେବୁ ।

ଏଥିରୁ ଧାନେ ଖୁଦ୍ଦା ଖଣ୍ଡ କରିବୁ ନାହିଁ କି କାହାକୁ ହେଲେ ଦେବୁ ନାହିଁ । ଧାନେ ଊଣାକରି ଦେବୁ ବୋଇଲେ ମୋର ବେମାର ତୁଟିବ ନାହିଁ । ଅଉ କାଣିଆ ଯେବେ ଏତେଟିକେ ହେଲେ ତାହାକୁ ଦେଇ ପକେଇବୁ, ତା ହେଲେ ତୋର ମୁଣ୍ଡଟା ହାଣି ଦେବି; ନୋହିଲେ ମୁଁ ଅପେ ବିଷଖାଇ ମରିଯିବି । ଏହା ଶୁଣି ସାଧବାଣୀ ମହାଭୟରେ ସେ ମାଂସତକ ନେଇ ମଠା ପାଲଟି ଅପେ ରାନ୍ଧିବ ବୋଲି ରୋଷେଇ ଘରେ ପଶିଲା । ବୁଢ଼ୀ ରାନ୍ଧିବାକୁ ଯିବାର ଦେଖି ବୋହୂମାନେ ତାଟକା ହୋଇ ଅଜା ଏ କି କଥା ହେଲା । ଅମେ ସାତ ସାତଟା ବୋହୂ ଥାଉଁ ଥାଉଁ ବୁଢ଼ୀ କାହିଁକି ରାନ୍ଧିବାକୁ ଗଲେ ବୋଲି ସ୍ୱା ମୁହଁକୁ ସେ ତା ମୁହଁକୁ ଇସ୍ୱେ ଚାହିଁ ରହିଲେ । ଅବା ବଡ଼ବୋହୂ ତ ଟିକେ ଘରପଣିଆ ହୋଇ ଯାଇଥିଲା, ସେ ଧାଇଁଅସି ବୁଢ଼ୀକି ବୋଇଲା, "ମଲା ମୋର, ତୁମେ କାହିଁକି ରାନ୍ଧିବାକୁ ଲାଗିଛ ମ, ଅମେ ସାତ ସାତଟା ବୋହୂ ଅଛୁ, କଣ ରନ୍ଧାବଢ଼ା କରିପାରୁ ନାହିଁ ଯେ ତୁମେ ବୁଢ଼ୀଟେ ହୋଇ ଚୂଲି ଫୁଙ୍କିବ । କି ଅମେ କଣ ଦୋଷ ଅପରାଧ କଲୁ ଯେ ସେଥିପାଇଁ ତୁମେ ରାନ୍ଧିବାକୁ ପଶିଛ ? ବୁଢ଼ୀ ବୋଇଲା, "ନାହିଁ ଲୋ ମା, ତୁମେ କାହିଁକି ଦୋଷ କରନ୍ତ, ଏହା ମୋ କପାଳର ଦୋଷ । ଦେଖୁଛୁ ତ ବୁଢ଼ା ଲାଉଁସିଆ କୁଅଡ଼ୁ ମାଂସଟିକେ ଅଣି ମତେ ଅକଟ କରି କହିଛି ତୁ ଏକା ରାନ୍ଧି ଅଣିଦେବୁ । ଅଉ କେହି ଛୁଇଁବେ ନାହିଁ କି ଦେଖିବେ ନାହିଁ । ସେଥିପାଇଁ ସିନା ମୁଁ ରାନ୍ଧିବାକୁ ଅସିଛି । ନୋହିଲେ ମୋର କି ଗରଜ ପଡ଼ିଥିଲା ଯେ ମୁଁ ହାଣ୍ଡିଶାଳେ ପଶନ୍ତି ।" ଏହା ଶୁଣି ବଡ଼ବୋହୂ ବୋଇଲା, "ମଲା ମୋର ବୁଢ଼ା କଣ ଜଗି ବସିଛି ଯେ, ତୁମକୁ ଅସି ପିଟି ପକାଇବ । ଅଣ ମୁଁ ରାନ୍ଧି ଦେଉଛି, ଦେଲାବେଳେ କହିଦେବ ମୁଁ ଲଗେ ରାନ୍ଧି ଅଣିଅଛି ବୋଲି ।" ସେ ଏପରି କହିବାରୁ ବୁଢ଼ୀ

ତାର କଥା ଭାଙ୍ଗି ନ ପାରି କହିଲା, ଆଚ୍ଛା ତୁ ରାନ୍ଧିଦେ ମାତ୍ର କାହାକୁ ଦେବୁ ନାହିଁ କି ଟିକେ ହେଲେ ପକେଇ ଦେବୁ ନାହିଁ । ଏହା କହି ବୁଢ଼ୀ ଅନ୍ୟ କାମ ଦେଖିବାକୁ ଚାଲିଗଲା । ବଡ଼ବୋହୂ ଖୁବ୍ ଯତ୍ନରେ ସେ ମାଂସ ରାନ୍ଧୁଛି, ସେତିକିବେଳେ ସବା ସାନବୋହୂ ସେଠାକୁ ଆସି ଟିକିଏ ଠିଆ ହେବାରୁ ସେ ମାଂସ ଲକେଇ ଯାଇ ବାସନା ମହକି ଉଠିଲା । ସେ ତ ଗର୍ଭିଣୀ ସ୍ତ୍ରୀ, ତାକୁ ଅରୁଚ କରିଥିବାରୁ ନାନା ମନସଧ ଖାଇବାକୁ ଲୋଡ଼ୁଥାଏ । ତେଣୁ ସେ ବଡ଼ ଯାଆକୁ ବୋଇଲା କି ଗୋ ନାନି ଆଜି କଣ ଅପୂରୁବ ରାନ୍ଧୁଛ କି, କେଡ଼େ ମହକ ଉଠୁଛି, ମତେ ଟିକିଏ ଦେଲ ମୁଁ ଚାଖେ । ବଡ଼ ଯାଆ ବୋଇଲା, ନାହିଁ ମ ଏ ଖାଇବା ପଦାର୍ଥ ନୁହେ । ବୁଢ଼ା ଔଷଧ କରିବ ବୋଲି କଣ କି ମାଂସ ଟିକେ ଦେଇଥିଲେ ଯେ, ତାକୁଇ ରାନ୍ଧି ଦେଉଛି । ଏହା ଶୁଣି ସାନ ବୋଇଲା, "ମଲା ଗର୍ଭିଣୀ ମାଇପେ ମନସଧ କଲେ, ଗାଁ ଗଣ୍ଡା ଲୋକେ ଯାହା ବୋଇଲେ ତା ଦେଉଛନ୍ତି, ତୁମେ ପେଟ ଯା ହୋଇ ତୁଣଟିକେ ଦେବାକୁ ଏତେ ଛନ୍ଦ ମନ୍ଦ କରି କହୁଛ ।" ଏହା ଶୁଣି ବଡ଼ବୋହୂ ସମ୍ଭାଳି ନ ପାରି ଗୋଟିଏ ଗିନାରେ ସେଥିରୁ ଟିକିଏ ତାକୁ ଦେଇ ବୋଇଲା, "ପଣତ କାନି ଘୋଡ଼ାଇ ନେଇ ଯା, ତୋ ଶୋଇଲା ଘରେ ବସି ଖାଇଦେବୁ । କାହାକୁ କିଛୁ କହିବୁ ନାହିଁ ।" ଏହା ଶୁଣି ସାନ ସେ ମାଂସଟିକି ନେଇ ଚାଲିଗଲା । ଟିକେ ପରେ ସାଧବାଣୀ ବୁଢ଼ୀ ଆସି ସେ ହାଣ୍ଡି ସୁଦ୍ଧା ବୁଢ଼ାକୁ ଦେଇ ଆସିଲା । ବୁଢ଼ା ସେହି କାଳେଇ ମାଂସ ରନ୍ଧାଯାକ ପୋଛିପାଛି କରି ଖାଇ ମୁହଁ ହାତ ଧୋଇ, ହାଣ୍ଡିଟି ଧୁଆଧୋଇ କରି ଥୋଇଦେଇ ମନେ ମନେ ବିଚାରିଲା, ଏଥର ଏ ସମ୍ପତ୍ତି ମୋର ହୋଇଗଲା । ମାତ୍ର ଯାହା କଥା ଯେ ଜାଣେ-ସେଥିପାଇଁ ବଡ଼ ପୁରୁଷେ କହିଛନ୍ତି—



ନ ହି କର୍ମାଣି କ୍ଷୀୟନ୍ତେ କଳ୍ପକୋଟିଶତୈରପି
ଅବଶ୍ୟମେବ ଭୋକ୍ତବ୍ୟଂ କୃତକର୍ମଂ ଶୁଭାଶୁଭଂ ।

ମନୁଷ୍ୟ ଯାହା ଅର୍ଜି ଅଣିଥିବ ଅବଶ୍ୟ ତାହା ଭୋଗ କରିବ । ଏହାପରି ୧୨, ୧୪ ଦିନ ଗ୍ଳଲିଗଲା । ଠିକ୍ ପନ୍ଦରଦିନ ଦିନ, ପୁଣି ସେଇ ଜଉତିଷ ବୁଢ଼ା ପାଖକୁ ଫେରିଆସିବାରୁ ବୁଢ଼ା ହସହସ ହୋଇ ତାକୁ ବୋଲିଲ, "ଭଲ ଗଣିଲ ଏବେ ଅମ ଘରେ କଏ କପାଳିଆ ଅଛି ?" ଜଉତିଷ ଡୋଠି କାଟି ଗଣାଗଣି କରି କହିଲା, "ଅରେ ସେ ଛଲେଇ ତ ଆଜ ନ ହିଁ । ଏଣିକ ତୁମେ ସମସ୍ତେ ତୁମ ସବା ସାନବୋହୂର ଗର୍ଭରେ ଯେଉଁ ପୁଅ ଅଛି ତାରି କପାଳରେ ଏକା ଭାଗ୍ୟ ଭୋଗ କରି ବଞ୍ଚିବ । ଅଉ କାହାରି କପାଳରେ କଡ଼େ କଉଡ଼ି ସୁଦ୍ଧା ପାଇବାକୁ ନାହିଁ ।" ଏହା ଶୁଣି ବୁଢ଼ା ଚମକି ପଡ଼ିଲା ପରି ହୋଇ ଜଉତିଷକୁ ପାଞ୍ଚଟି ଟଙ୍କା ଦେଇ ବିଦା କରିଦେଲା । ସେ ଗ୍ଳଲିଯିବାରୁ ସୌଦାଗର ବୁଢ଼ା ବଡ଼ ଅକୁଳ ହୋଇ ମନେ ମନେ ଭାବିଲା ବୁଢ଼ୀରାଣ୍ଡୀ ଏକା ମୋର ସର୍ବନାଶ କଲା । ସାନବୋହୂ ଗର୍ଭ ହୋଇଅଛି ବୋଲି ତାକୁ କାଶ୍ଟେଁ ମାଂସ ରନ୍ଧାରୁ କିଛି ଖାଇବାକୁ ଦେଇଦେଲା, ଏଥିରେ ଅଉ ଖୋଜିଲେ କଣ ହେବ ? ଅଉ ବଞ୍ଚି ରହିବାରେ ପ୍ରୟୋଜନ ନାହିଁ । ଏପରି ଭାବି ଗୋଟିଏ ଘରେ ଦୁଆର କିଳି ଶୋଇଲା । ଖିଆପିଆ ବେଳ ହୁଅନ୍ତେ ବୁଢ଼ୀ ଅସି ଡାକିବାରୁ ବୁଢ଼ା ୫୦, ୬୦ ଗାଳିରେ କଦାଟ ଫିଟାଇ କହିଲା, "ତୁ ଡାଆଣୀ ରାଣ୍ଡୀ ମୋର ସମ୍ପତ୍ତି ସାରିଲୁ । ତୋ ଲାଗି ମୋତେ ଭିକ ମିଳିବ ନାହିଁ । ତୁ ମୋର ମାଂସ କାହାକୁ ଦେଲୁ କହ ।" ବୁଢ଼ୀ ବୋଇଲା, "ମୁଁ ଜାଣେ ଦୁଆର କିଳି ରନ୍ଧି ଅଣିଲି ଯେ କୁଅ ବୋଇଲି ସୁଦ୍ଧା ଦେଖି ନାହିଁ । ଅଉ ତୁମର ମାଂସଗୁଡ଼ାକ କଏ କମିତ ଖାଇଗଲା ଯେ ତୁମେ ପ୍ରକୃତଛଡ଼ା ପଣିଆ ପରି ହେଉଛ ?" ବୁଢ଼ା ତ

କଳ୍ପତରୁଠାରୁ ମୂଳମଞ୍ଜି ପାଇଛୁ । ତା'ର ମନ କେଉଁଠେଇ ବେଧ ହେଉଛୁ । ସେ ବୁଢ଼ୀକ ସେଠାରୁ ତଡ଼ିଦେଇ ନ ଖାଇ ନ ପିଇ ଦୁଆର କଳ ଶୋଇଲା । ଏପରି କିଛୁଦିନ ଗଲା ଉତ୍ତାରୁ ତେଣେ ପୁଅମାନେ ଅନେକ ଧନ ଦୌଲତ ଲାଭ କରି ବୋଇତ ଆଣି କୂଳରେ ରଖାଇ ଘରକୁ ଖବର କହି ପଠାଇଲେ । ସାଧବଘର ପୁଅମାନେ ଆସିଲେ ବୋଲି ଚହଳ ପଡ଼ିଗଲା । ଦେଖିବାପାଇଁ ଗାଁ ଗଣ୍ଡା ଲୋକ ଧାଇଁଲେ । ସାଧବାଣୀ ବୁଢ଼ୀ ପୁଅମାନେ ଆସିବାରୁ ବୋହୂମାନଙ୍କୁ ବେଶଭୂଷା କରି ତାଙ୍କ ହାତରେ ଅର୍ଘ୍ୟଥାଳ ଧରାଇ ବୋଇତ ବନ୍ଦେଇବ ବୋଲି ଆନନ୍ଦରେ ଧାଇଁଲା । ସବୁରି ଛାତି କୁଣ୍ଢେ ମୋଟ । ସାଧବବୁଢ଼ା କିନ୍ତୁ ଘରୁ ବାହାର ହେଲା ନାହିଁ । ତାର ମନ ତ ଚୋରି ଯାଉଛୁ ସେ ଆଉ ପୁଅମାନଙ୍କୁ ଦେଖିଯିବ କଣ, ଦୁଆରଟି କିଳିଦେଇ ଘର ଭିତରେ ଶୋଇ ରହିଲା । ତେଣେ ପୁଅମାନେ ଦେଖିଲେ ଯେ ସମସ୍ତେ ଆଇଲେ ବୁଢ଼ା ଆସି ନାହିଁ । ତେଣୁ ତର୍ଜ୍ଜବ କଲେ ବୁଢ଼ା ଅବା ମରିଗଲା କି ? ଥିଲେ ତ ସବୁରି ଆଗରେ ଧାଇଁ ଆସନ୍ତା, ଏବେ ସେ କାହିଁକି ଦିଶୁ ନାହିଁ । ଏପରି ପାଞ୍ଚ ପାଞ୍ଚ ମା'କୁ ଦେଖିଲେ ଯେ ତାର ବିଧବା ଲକ୍ଷଣ ଦିଶୁନାହିଁ । ସଧବା ଲକ୍ଷଣରେ ଥାଇ ଅଙ୍ଗଅଳଙ୍କାର ମଣ୍ଡି ହୋଇଅଛୁ । ସବୁ ପୁଅଯାକ ତା ଗୋଡ଼ତଳେ ମୁଣ୍ଡିଆ ମାରି ପଚାରିଲେ—ତୁମେ ସମସ୍ତେ ଆସିଲ; ବାପା କାହିଁକି ଆସି ନାହାନ୍ତି ? ବୁଢ଼ୀ କହିଲା, "ତାଙ୍କ ଦେହ ଟିକେ ଅସୁଖ ଥିବାରୁ ସେ ଆସି ନାହାନ୍ତି । ଚାଲ ଘରକୁ ଗଲେ ଦେଖିବ ନାହିଁ କି ?" ଏହା କହି ବୋହୂମାନଙ୍କୁ ଧରି ବୋଇତ ବନ୍ଦାଇଲା । ସାଧବ ପୁଅମାନେ ମାଲମତାଯାକ ବୁହାଇ ଘରକୁ ଆସି ଦେଖିଲା ଦେଲକୁ ବୁଢ଼ା ଦୁଆର କିଳି ଶୋଇଅଛୁ । ତାକୁ ଅନେକ ଡାକିବାରୁ ଦୁଆର ଫିଟାଇ ଆସି ମିଛି ମିଛି କରି ଘରପୋଛି ମୁହାଁ

ପର ବକଲ ହୋଇ ବସିଲା । ପୁଅମାନେ ବୋଇଲେ, "ବାପା, ତୁମେ କାହିଁକି ଏପରି ଦୁଃଖିତ ହୋଇଅଛ ? ତୁମକୁ କିଏ କ'ଣ ଅପମାନ ଦେଲା କି ?" ବୁଢ଼ା ବୋଇଲା, ମୋର ଦୁଃଖକଥା କଣ କହିବି ? ତୁମ୍ଭେମାନେ ଯେବେ ମୋର ସୁପୁତ୍ର ହୋଇଥିବ ତେବେ ମୋର ଆଜ୍ଞା ପାଳନ କରିବ । ପୁଅମାନେ ବୋଇଲେ ଯାହା କହିବ ଅମ୍ଭେ ତାହା ନିଶ୍ଚେ କରିବୁ । ବୁଢ଼ା ବୋଇଲା,"ସାନ ବୋହୂଟାକୁ ହାଣିଦିଅ, ନୋହିଲେ ଘରୁ ତଡ଼ିଦିଅ । ଏକଥା କଲେ ମୋର ମନ-ଥଣ୍ଡା ହେବ, ମୁଁ ଖାଇପିଇ କରି ସୁଖରେ ରହିବି । ମୋର ଜୀବନକୁ ଆଶା ନାହିଁ, ମୁଁ ଉପାସ ଭୋକରେ ପଡ଼ି ପଡ଼ି ପ୍ରାଣ ହରାଇ ଦେବି ।" ଏହା ଶୁଣି ପୁଅମାନେ ବଡ଼ ଦୁଃଖିତ ହୋଇ କିଛି ଉତ୍ତର ନ ଦେଇ ଭିତରକୁ ଚାଲିଗଲେ । ଘରେ ବୁଢ଼ୀ ଠାରେ ସମସ୍ତଙ୍କୁ ବସାଇ ବୁଢ଼ା ଏପରି କାହିଁକି ରାଗିଛି ବୋଲି ପଚାରିଲେ । ବୋହୂମାନେ କହିଲେ, ଆମେ ତ କିଛି ଦୋଷ କରି ନାହୁଁ, ସେ କାହିଁକି ରାଗିଛନ୍ତି ତା ଆମେ କେମିତି କହିବୁଁ । କେଜାଣି ସେ କାହିଁକି ରାଗିଛନ୍ତି । ଶାଶୁଙ୍କୁ ପଚାରି ସେ ଜାଣିଥିବେ । ବୁଢ଼ୀ କହିଲା, ବୁଢ଼ା ହେବାରୁ ସେଇଟାର ପ୍ରକୃତି ଅନ୍ତର ହେଲାଣି । ମୋର ବୋହୂମାନେ ତ ସବୁ ସୁନାପରି ବୋହୂ, ଯେ ମୁଁ ଯେମିତି ରଖିଥିବି ସେମିତି ଥିବେ ଆଜି ତୁମ୍ଭେମାନେ ଯିବା ଦିନଠାରୁ କେ ତିଏ ଦିନ ହେଲେ କିଛି ବୋଲଣା ନ କରି ଅତି ଆନନ୍ଦରେ ଘର ଚାଳୁ ଅଛନ୍ତି । ସାନବୋହୂ ମୋର ରଜାଘର ଝିଅ ଯେ ତା ଗର୍ଭ ହରିଲେ ସେ ଥାଏ, ପୁଣି ତା ପେଟରେ ନଅମାସ ପନ୍ଦର ଦିନ ହେଲାଣି । ଏ କଥା କଣ ତାର ସ୍ୱାମୀ ଜାଣିନାହିଁ କି ? ବୁଢ଼ାଟା ତୁମକୁ ପ୍ରକୃତିଛଡ଼ା ହୋଇ ତାକୁ ମାରିଦିଅ ଘରୁ ତଡ଼ିଦିଅ ବୋଇଲେ ତୁମେ ତାର କଥାରେ ଅଦୋଷୀଙ୍କ ଦଣ୍ଡ ଦେବ କି ? ଏହା ଶୁଣି ପୁଅମାନେ ସାନଭାଇକି କହିଲେ ମା'ତ ଏପରି

କହୁଛନ୍ତି । ତେଣେ ବାପା ତ ଏବେ। ଜିଦ୍ ଧରି ବସିଛନ୍ତି । ତେଣୁ ତୁ ତୋର ଭାର୍ଯ୍ୟାକୁ ନେଇ ଥୋଡ଼େ ଦିନ ବିଦେଶକୁ ଚାଲି ଯା । ବୁଢ଼ାକୁ ଆମେ ବୁଝେଇ ସୁଝେଇ ଥଣ୍ଡା କରିଦେଲେ ପରେ ତୁ ତୋର ଭାର୍ଯ୍ୟାକୁ ଧରି ପୁଣି ବାହାରି ଆସିବୁ । ବଡ଼ଭାଇମାନେ ଏ କଥା କହିବାରୁ ସାନଭାଇ ତା'ର ଭାର୍ଯ୍ୟାକୁ ଧରି ସେହିକ୍ଷଣି ଘରୁ ପଳାଇଗଲା । ତାହା ଦେଖି ବୁଢ଼ା କ୍ରୋଧ ଶାନ୍ତକରି ଖିଆପିଆ କଲା । ଅଜି ସମସ୍ତେ ଦୁଃଖ ମନରେ ଥାନ୍ତି । ତେଣେ ସେ ଦୁହେଁ ଯାଉଁ ଯାଉଁ ବେଳ ତିନିପହର ହୋଇଗଲା । କିଛି ଖାଇ ନାହାନ୍ତି, ଭୋକରେ ପେଟ ଜଳିଲା । ରଜାଝିଅ ଆଉ ଚାଲି ନ ପାରି ତାର ସ୍ୱାମୀକି କହିଲା—ମୋ ଲାଗି ତୁମେ ଭୋକରେ ମରିବ କି ? ମୁଁ ଏହି ନଈକୂଳରେ ବସିଛି । ତୁମେ ଯାଅ ଆଗରେ ଦିଶୁଥିବା ବଜାରରୁ କିଛି ଜଳଖିଆ ଅଣି ଖାଇବ, ତୁମଠାରୁ ଯାହା ବଳିବ ମୁଁ ମଧ ତାହା ଖାଇବି । ସାଧବପୁଅ ତା କଥାରେ ରାଜିହୋଇ ବଜାରକୁ ଗଲା । ସେ ରାଜଜେମା ସେଇଠି ଗୋଟିଏ ଗଛମୂଳ ଛାଇରେ ବସି ରହିଲା । ଏପରି ସମୟରେ ଦାଇବର ଦୁର୍ଘଟଣା ଦେଖ ଯେ, ସାଧବପୁଅ ଅନ୍ତର ହେବା ସଙ୍ଗେ ସଙ୍ଗେ ସେ ସ୍ତ୍ରୀର ଗର୍ଭଶୂଳ ଜାତହୋଇ ଗୋଟିଏ ଦିବ୍ୟ ସୁନ୍ଦର ପୁଅ ଜନ୍ମ ହୋଇ ପଡ଼ିଲା । ରାଜଜେମା ସେ ପିଲାଟିକି ଜନ୍ମକରି ମନେ ମନେ ପାଞ୍ଚିଲା, ମୋର ପୋଡ଼ା କପାଳକୁ ବଣ ମଝିରେ ପିଲା ଜନ୍ମ କଲି । ପାଖରେ କେହି ନାହିଁ । ମୁଁ ଯେପରି ଅବସ୍ଥାରେ ଅଛି, ମୋର ସେ କଥାଯାକ ସ୍ୱାମୀ ଦେଖିଲେ ତାଙ୍କ ମନରେ ଏପରି ଘୃଣା ହେବ ଯେ, ଅଉ ଦିନେ ହେଲେ ମୋ ପାଖକୁ ଅସିବେ ନାହିଁ କି ମୋ ହାତରେ ଖାଇବେ ନାହିଁ । ତେଣୁ ସେ ନ ଅସିବା ଅଗରୁ ମୁଁ ଯାଇ ନଈରେ ଧୁଆ ଧୋଇ ହୋଇ ଚାଲି ଅସିଥିବି । ଏ କଥା ବିଚାରି ପିଲାଟିକି ସେହି ଗଛ ମୂଳରେ କନା ଖଣ୍ଡିକରେ ଶୁଆଇ ଦେଇ ନଈକି ଚାଲିଗଲା ।

ହଇବ ତ ବଡ଼ଲୋକ, ସେ ଯାହା ଘଟାଇଥିବ ତାହା କଏ ଅନ୍ୟଥା କରିବ । ଏଠାରେ କପର ଅଶ୍ଚର୍ଯ ଘଟିଲା ଦେଖ ଯେ, ସେହି ଟାଙ୍ଗ ଗାଁରେ ଗୋଟିଏ କେଉଟ ବୁଢ଼ାର ଘର । ତାର ପିଲାପିଲି କେହି ନାହିଁ କେବଳ ଧୀବଯାଣି ଥାଏ ସେ ମଧ୍ୟ ବୁଢ଼ୀ ହୋଇଗଲାଣି । ଛଅ ସାତ ମାସ ହେଲା ସେ କେଉଟୁଣୀ ବୁଢ଼ୀ ବାପଘରକୁ ଯାଇଥିଲା ଯେ, ସେହିଦନ ସଞ୍ଜବେଳକୁ ଅସିବ ବୋଲି କହି ପଠାଇଲା । ତେଣୁ କେଉଟବୁଢ଼ା ଲୁଣିଅ ଅସିବେ ବୋଲି ଜାଲ ଧର ମାଛ ମାର ନେବାପାଇଁ ସେ ବାଟରେ ଅସି ଦେଖିଲା ଯେ, ଗଛମୂଳରେ ଗୋଟିଏ ବାଳକ ପଡ଼ି କୁଆଁ କୁଆଁ କାନ୍ଦୁଅଛି । ସେଠାରେ କୁଅ କୋଇଲି ପୁଲା ଦେଖା ନାହିଁ । ବୁଢ଼ା କେଉଟ ଏ ଘଟଣା ଦେଖି ମନରେ ଭାବିଲା, ମୋର ପୁଅ ନ ଥିବାରୁ ମୁଁ ସବୁବେଳେ ଈଶ୍ୱରଙ୍କୁ ଜଣାଉଥିଲି । ପ୍ରଭୁ ଦୟାକର ମୋତେ ଏ ବାଳକଟି ଦେଇଅଛନ୍ତି । ନୋହିଲେ ଏ ମଧ୍ୟରେ ଏହିକ୍ଷଣି ଜନ୍ମ ହେବାର ସନ୍ତାନଟିକୁ କଏ ଛାଡ଼ିଯାନ୍ତା । ଏ କଥା ବିଗୁର କର ଅଉ ମାଛ ମାରିବାକୁ ଯିବ କଣ ପିଲାଟାକୁ ଜାଲରେ ଗୁଡ଼ାଗୁଡ଼ି କର ଘରକୁ ନେଇଗଲା । ଏ ଗଲାବେଳକୁ ତେଣୁ ବୁଢ଼ୀ ଅସି ଘରେ ବସିଛି । ତାକୁ ବୋଇଲା ଦେଖିଲୁଣି ଏ ପିଲାଟି ମୋତେ ପରମେଶ୍ୱର ଦେଇଛନ୍ତି । ତୁ ତୋର ପେଟରେ କନା-କପଡ଼ା କେତେ ଖଣ୍ଡ ଗୁଡ଼ାଗୁଡ଼ି କର ଦଶମାସୀ ପେଟପର ପେଟୁଟେ କାଢ଼ । ସାଇ ପଡ଼ଶାରେ ପାଞ୍ଚ ସାତ ଘରୁ ବୁଲି କର ଅ । କଏ ପଗ୍ଚରିଲେ କହିବୁ, ହଁ ଈଶ୍ୱର ଏତେ ଦନରେ କଣ ଦେଲାପର ଦଶୁଛି ? ନଅମାସ ତ ଗଡ଼ିଗଲାଣି ଦେଖାଣି କଣ ଯୋଗ ଅଛୁଟି । ଏପର କହି କହି ବେଳେ ବୁଲି ଅ । ପରେ ଯାହା ମୁଁ କହିବି, ତାହା କରିବୁ । ବୁଢ଼ୀ କେଉଟୁଣୀ ଏପର ଶୁଣିବା ମାତ୍ରେ କପଟରେ ଦଶମାସ ପର ପେଟ କାଢ଼ି ନିଆଁ ମାଗି ଅଣିବା ଛଳରେ ପାଖପଡ଼ଶା

କେଉଟା ଘରେ ପଶିଗଲା । ସେ ଘରର ମାଇପିମାନେ ପଚାରିଲେ, "କଲେ ଆଈ ତୋର ଏ କଣ, ଷାଠିଏବର୍ଷରେ ଷଠୀଘର କରବୁ କି ?" ବୁଢ଼ୀ ହସି ହସି ବୋଇଲା, "ଏ ଅଲଜୁକ କଥାଟା କଣ ଅଉ କହିବି ? ଦଶମାସ ପନ୍ଦର ଦିନ ତ ଭୋଗ ହୋଇଗଲାଣି ଯାହା ହେବ ଦିନେ ଓଳିକ ଭିତରେ ଜଣାଯିବ । ଅଜି ତ କାହିଁକି ମୋର ପେଟ ଟା ବଥେଇଲାଣି । ଏପରି ପାଞ୍ଚ ସାତ ଘରେ କହିଦେଇ ଝଟକିନା ଘରକୁ ଲେଉଟି ଆସିଲା । ସେ ଆସିଲା ବେଳକୁ ଏଣେ ବୁଢ଼ା କେଉଟ ଏନୁଡ଼ି ଜାଲଦେଇ ଚାହିଁ ବସିଛି । ବୁଢ଼ୀ ପେଟରୁ କନାପଟା ବୁଜୁଳାକ କାଢ଼ିଦେଇ ପିଲାଟିକୁ ଜଙ୍ଘରେ ଶୁଆଇ ସେକିବାକୁ ଲାଗିଲା । ଦୁଇ ଚାରି ଚାପୋଡ଼ ସେକ ଦେବାରୁ ସେ ପିଲାଟି ତାଜା ହୋଇ କୁଆଁ କୁଆଁ କରି କାନ୍ଦ ଉଠିଲା । ସାଇ ପଡ଼ିଶା ମାଇପିମାନେ ସେ କାନ୍ଦ ଶୁଣି ହେଇଟି ବୁଢ଼ୀ କେଉଟୁଣୀ ପିଲା ପାଇଲାଣି ବୋଲି ଦଉଡ଼ି ଆସିଲେ । କିଏ ବୋଇଲା ଅଇ କଅଣ ପାଇଛୁ କହିଲୁ । ଅଗ ବୁଢ଼ୀ ବୋଇଲା ଦେଖ ହେଇଟି ନାଡ଼ ଟିକିଏ ଲାଗିଛି ତ । ମାଇପେ ବୋଇଲେ, ତୋର ବଡ଼ ଭାଗ୍ୟ, ବୁଢ଼ୀକାଳେ ପୁଅ ପାଇ କୁଳ ରଖିଲୁ । ଏହାପରେ କୁହାପୋଛା କରି ସେମାନେ ଯେ ଯାହା ଘରକୁ ଚାଲିଗଲେ । କେଉଟୁଣୀ ଦେଖିଲା ଯେ ସେ ପିଲାର ନାଭିରେ ଖଣ୍ଡିଏ ହୀରା ଅଛି । ସେ ଖଣ୍ଡିକ ବୁଢ଼ାକୁ ଦେଇ ଅତି ଯତ୍ନରେ ପିଲାକୁ ପାଳିଲା । ପ୍ରତିଦିନ ସକାଳୁ ଦେଖିଲା ବେଳକୁ ତାର ନାଭିରେ ହୀରା ଖଣ୍ଡିଏ ଥାଏ । କେଉଟ ବୁଢ଼ା ସେ ହୀରାଯାକ ବିକାକିଣା କରି ଧନ ବଢ଼େଇବାକୁ ଲାଗିଲା । ସେ ପିଲାକୁ ହୀରାଲାଲ ବୋଲି ନାମ ଦେଲେ । ଏଣେ ତାର ଜନ୍ମକଲା ମାଆ ନଈରୁ ଫେରି ଆସି ଦେଖିଲା ବେଳକୁ ପିଲାଟି ନାହିଁ । କି କଲି ବୋଲି ମୁଣ୍ଡ କୋଡ଼ି ହୋଇ ରୁଦ୍ର ଛୁଣ୍ଡେଇ କାନ୍ଦୁଛି । ଏହି ସମୟରେ ତାର ସ୍ୱାମୀ ବଜାରରୁ

ଜଳଖିଆ ପଦାର୍ଥ ଅଣି ସେଠାରେ ପହଞ୍ଚି ପଚାରିଲା— କାହିଁକି କାନ୍ଦୁଛୁ । ସେ ସବୁ ଘଟଣା ଯାକ କହି ଅଧିକ କାନ୍ଦିଲା । ସାଧବପୁଅ ବୋଇଲା ଛି ଛି; ତୁ ଚଣ୍ଡାଳୁଣୀ କେଡ଼େ ହୀନକର୍ମ ନ କଲୁ, ଆଉ ତୋର ମୁହଁ ଚାହିଁବି ନାହିଁ । ଏହା କହି ସେ ଭରିଯାକୁ ସେହି ବଣ ଭିତରେ ଛାଡ଼ିଦେଇ ଘରକୁ ଯାଇଁ ବାପ ଭାଇଙ୍କ ପାଖରେ ରହିଲା । ତେଣେ ସେ ରାଜଜେମା ଆଉ କଣ କରିବ । ପୁଅ ହଜିଲା, ଘଇତା ଛାଡ଼ି ପଳେଇଲା, ଅଗତ୍ୟା ବଣମଝିରେ ପଡ଼ି କାନ୍ଦୁଛି । ଏପରି ସମୟରେ ଦାଇବର ଘଟଣା ଦେଖ ଯେ, ସେହି ଅଖପାଖ ଗାଁର ଭାଗବତ ପଚ୍ଛନାୟକ ବୋଲି ଜଣେ କରଣ ବୁଢ଼ା ଅସି ସେଠାରେ ପହଞ୍ଚି ଗଲା । ସେ କନ୍ୟା ବିକଳରେ କାନ୍ଦୁଥିବାର ଦେଖି ତାକୁ ଆଶ୍ୱାସନା ଦେଇ ପଚାରିଲା—କିଲୋ ମା, ତୋର ଘର କେଉଁଠି ? ତୁ କାହାର ଝିଅ ବୋହୂ, ଏକାହୋଇ ଏ ବଣକୁ କପରି ଅସିଲୁ କାହିଁକି ଏତେ ବିକଳରେ କାନ୍ଦୁଛୁ ? ସାଧବ ବୋହୂ ତାର ପୂର୍ବ ଚରିତଯାକ କହି ଅଧିକ କାନ୍ଦିବାକୁ ଲାଗିଲା । କରଣ ବୁଢ଼ା ବୋଇଲା, "ମୋର ପୁଅ ଝିଅ ନାହିଁ । ଅମେ ବୁଢ଼ା ବୁଢ଼ୀ ଦୁଇ ଜଣ ମାତ୍ର ଅଛୁ । ତୁ ଅଜଠାରୁ ମୋର ଧର୍ମଝିଅ ହେଲୁ । ଅ, ମୋର ଘରେ ମହାସୁଖରେ ରହିବୁ । ମୁଁ ତୋର ବାପଘର ଅଉ ଶ୍ୱଶୁରଘର ବୁଝାସୁଝା କରି ପଛେ ନେଇ ତୋତେ ଛାଡ଼ିଦେଇ ଅସିବି ।" ସାଧବ ବୋହୂ ବିଚାରିଲା ଶାସ୍ତ୍ର ଲେଖିଛି—"ପ୍ରୀତରେ ବିପତ୍ତିରେ ପରଘରେ ଭାତ ଖାଇବା ଅଟଇ—ଏହା ପଣ୍ଡିତଙ୍କ ମତ ।" ମୋତେ ତ ଘୋର ବିପତ୍ତି ପଡ଼ିଅଛି, ଏତେବେଳେ ଅଉ ଜାତ କଣ ପଚାରିବି । ଯାଉଛି ଏହି ବୁଢ଼ୀ ଘରେ କେତେଦିନ ଅଗ ଠକିରି ଯିବ । କେଜାଣି ଦାଇବ ମୋର ପିଲାଟିକୁ କୁଟେଇ ନେଇ ବଞ୍ଚାଇ ଥିବ, ତେବେ ମୁଁ ବଞ୍ଚିଥିଲେ ଅବା ତାକୁ ପାଇବି । ଏକଥା

ଶଶୁର ଘର ସେହି କାରଣ ବୁଢ଼ା ସଙ୍ଗେ ଯାଇ ତାର ଘରେ ରହିଲା । ତାଙ୍କର ପୁଅ ଝିଅ ନ ଥିବାରୁ ସେ ବୁଢ଼ା ବୁଢ଼ୀ ତାକୁ ଧର୍ମଝିଅ କରି ଅତି ଯତ୍ନରେ ରଖିଲେ । କେଉଁଠି ଘରେ ସେ ପିଲାଟି ଚନ୍ଦ୍ରକଳା ବଢ଼ିଲା ପରି ଦିନକୁଦିନ ବଢ଼ିଲା । ପ୍ରତିଦିନ ତାର ନାଭିରୁ ହୀରା ଗଣ୍ଡିଏ ଲେଖାଏଁ ଜାତ ହେଉଥାଏ, କେଉଁଠି ବୁଢ଼ା ସେ ହୀରାଯାକ ବହୁମୂଲ୍ୟରେ ବିକିକରି ଅଚଳାଚଳ ସମ୍ପତ୍ତି କରିଲା । ବହୁତ ଧନ ହେବାରୁ ତାକୁ ସବୁଲୋକେ ମାନିଲେ, ଗାଁରଅଞ୍ଚଳ ତାର ନାମ ବିଖ୍ୟାତ ହେଲା । ପୁଅଟି ପାଠଶାଠ ପଢ଼ିପଣ୍ଡିତରେ ଗାର ପଡ଼ିଲା । ରୂପ ତାର ସାକ୍ଷାତେ କନ୍ଦର୍ପ ପରି, ଗୁଣ ମଧ୍ୟ ସେହିପରି । ତାକୁ ଚଉଦ ପନ୍ଦର ବରଷ ହୋଇଯିବାରୁ ତା ପାଇଁ ଅନେକ କନ୍ୟାପାତ୍ର ଆସିଲେ । ତାହା ଜାଣି ସେ ପିଲା ବାପକୁ କହିଲା, "ତୁମ୍ଭେ ମତେ କେଉଁଠି ବାହା କରାଇବ ବିଚାର କରି ଆଗ ମୋତେ ସେ କନ୍ୟାକୁ ଦେଖାଇବ । ମୋର ମନ ପାଇଲେ ମୁଁ ତାକୁ ବାହା ହେବି ।" ଏହା ଶୁଣି କେଉଁଠି ବୁଢ଼ା କାହାକୁ ହେଲେ ଜବାବ ନ ଦେଇ ଯେତେ କନ୍ୟାପାତ୍ର ଆସନ୍ତି, ତାଙ୍କୁ କହେ, "ମୋର ପୁଅ କନ୍ୟା ନ ଦେଖିଲେ ବାହା ହେବ ନାହିଁ ।" ସେ କଥା ଶୁଣି କନ୍ୟାଦାତାମାନେ ବିଚାରନ୍ତି ଏ କନ୍ୟା ଦେଖିଲେ ଯେବେ ତାର ମନ ନ ପାଇବ, ତେବେ କଣ ହେଲେ ଗୋଟିଏ ଖୁଣ ବାହାର କରି କହିଦେବ । ତା ହେଲେ ଆମର କନ୍ୟାକୁ କେହି ନେବେ ନାହିଁ । ଏମନ୍ତ ବିଚାର ଯେତେ ଯୁଆଡ଼ୁ ଆସିଲେ ସମସ୍ତେ ଫେରିଗଲେ । କେତେ ଦିନ ଗଲାପରେ ତାର ଜନ୍ମକଲା ମା'କୁ ଯେଉଁ କାରଣ ରଖିଥିଲା, ସେ ସେହି ସାଧବ ବୋହୂକୁ ପଚାରିଲା, ତୁ ତ ମୋର ଝିଅହୋଇ ମୋ ଘରେ ରହିଲୁ । ତୋର ଶାଶୁଘର କଥା ତ କହିଲୁ ନାହିଁ ? ଦେଖୁ ଦେଖୁ ଚଉଦ ପନ୍ଦର ବରଷ ବହିଗଲା । ଆମେ ତ ବୁଢ଼ା ବୁଢ଼ୀ ହେଲୁଣି । ଆମେ

ହଗଲେ ତାତେ କିଏ ରଖିବ ? ପାଠ ତ ଲେଖିଛି—ସ୍ତ୍ରୀମାନଙ୍କୁ ାଲ୍ୟକାଳରେ ପିତା, ଯୁବାକାଳରେ ଭର୍ତ୍ତା ଏବଂ ବୃଦ୍ଧାକାଳରେ ୃ ରକ୍ଷା କରିବ । ତେଣୁ କନ୍ୟାକୁ ବୋଇଲେ, ମୁଁ ଜୀଇଁ ଥାଉଁ ଥାଉଁ ତାତେ କୋଉଠିଏ ଧନୀଘରେ ବାହା କରାଇ ଦେବି । ଏହା ଶୁଣି ସେ କହିଲା, "ତୁମ୍ଭେ ତ ମୋର ବାପ—ତୁମର ଯାହା ଇଚ୍ଛା ହେଉଅଛି ତାହା କର ।" ସେ ଏପରି କହିବାରୁ କରଣ ବୁଢ଼ା ାର ଖୋଜି ଖୋଜି ଯାଇ ସେହି କେଉଟ ଘରେ ପହଞ୍ଚିଲା । ତାହାର ବହୁତ ଧନ ଥିବାର ଦେଖି ବାଗୁଡ଼ିଲା ଯେ ତାର ପୁଅକୁ ଏକା ମୋର ଝିଅଟି ଦେଲେ, ନିଶ୍ଚିନ୍ତରେ ରହିବ । ଏକଥା ପଞ୍ଚି କେଉଟ ବୁଢ଼ାକୁ କହିଲା । ସେ ବୋଇଲା ଯେବେ ବୋଲୁଛ ତୁମର କନ୍ୟାକୁ ମୋର ପୁଅ ଆଗେ ଦେଖିଲେ ପଛେ ବାହାହେବ । କରଣ ବୁଢ଼ା ବୋଇଲା, ମୋର ଝିଅ ପରି ସୁନ୍ଦରୀ ତ ସଂସାରରେ ନାହିଁ, ଆଉ ଦେଖିବ କଣ ? ଯେବେ ଏପରି କହୁଅଛ; ତେବେ ତୁମର ପୁଅକୁ କହିଦିଅ ଆଠଦିନ ଭିତରେ ଯାଇ ଦେଖି ଆସନ୍ତୁ । ଏକଥା କହି କରଣ ବୁଢ଼ା ଘରକୁ ବାହୁଡ଼ି ଗଲା । ତେଣେ କେଉଟ ଘରେ ନିଶ୍ଚୟ ହେଲା ଯେ, ପୁଅ ଯାଇ କନ୍ୟା ଦେଖି ଆସିଲେ ଏହି ଆସନ୍ତା ମାଘ ଶୁକ୍ଳ ଦଶମୀ ଦିନ ବିଭାଘର କରାଇ ଦେବା । କେଉଟପିଲା କନ୍ୟା ଦେଖି ଯିବାକୁ ଭଲ ବେଳ ଖୋଜୁଥାଏ । ସେ ଭଲ ବଳଦ ହଳେ ପୋଷିଥାଏ । ଗୋଟିଏ ଶଗଡ଼ ଗଡ଼ ରଖିଥାଏ । ଯେଉଁଆଡ଼େ ଯାଏ ସେହି ଶଗଡ଼ ଗାଡ଼ିରେ ବସିକରି ଯାଏ । ରାତିରେ ସେ ବଳଦ ହଳକୁ ଯେଉଁଠି ବାନ୍ଧେ, ସେହି ପାଖରେ ଗୋଟିଏ ଖଟ ପକାଇ ତହିଁରେ ଶୁଏ । ଯେଉଁଦିନ କନ୍ୟା ଦେଖିବାକୁ ନିଶ୍ଚୟ କଲା, ତା ରି ପୂର୍ବଦିନ ରାତିରେ ବଳଦଙ୍କ ପାଖରେ ଶୋଇଛି, ତାକୁ ନିଦ ଲାଗୁନାହିଁ, ଏତିକିବେଳେ ସେଥିରୁ ଗୋଟିଏ ବଳଦ ଆର ବଳଦକୁ କହିଲା-

ଅରେ ଭାଇ ଆଜ ଗୁରିବିଦନ ଚଲେ ମାଆଙ୍କୁ ପୁଅ ବାଘ ହେବ । ଅର ବଳଦ ବୋଇଲା କାଏ ବାଘ ହେବ କହୁଲୁ ? ସେ ବୋଇଲା ଅମରି ମାଲିକ ଡ ବାଘ ହେବ । ଅର ବଳଦ ବୋଇଲା, ଅମର ମାଲିକ ପଗ କରଣ ଝିଅକୁ ବାଘ ହେବ—ଅଜ ମା'କୁ କେମିତ ବାଘ ହେବ ? ସେ ବୋଇଲା ତୁ ଜାଣି ନାହୁଁ, କରେ ସେଇଟା କରଣ ଝିଅ ନୁହେଁ, କା ଏଇଟା କେଜଠ ପୁଅ ନୁହେ । ଏ ହଳକ ଖୋଦରେ ମା ପୁଅ। ଏପରି କଥାବାର୍ତ୍ତା ହୋଇ ବଳଦ ହଳକ ତୁନି ହେଲେ । କେଜଠ ପୁଅ ତାଙ୍କ କଥାଯାକ ଶୁଣି ବଡ଼ ଚମତ୍କାର ହୋଇ ବସି ରହିଲା । ସେ ରାତିଟାଯାକ ତାକୁ ଅଜ ନିଦ ଲାଗିଲା ନାହିଁ । ଅରଦିନ ସକାଳୁ ଉଠି ବୁଢ଼ାକୁ ବୋଇଲା— ବାପା, ମୋତେ କରଣ ଘରେ ବାଘ କରିବାକୁ ବୋଲୁଛ ଯେ ସେ କରଣ ଜାତ, ଅମେ କେଜଠ ଜାତ, ସେ କାହିଁକି ଅମ ଘରେ କନ୍ୟା ଦେବ ବୋଲି କହୁଅଛୁ । କେଜାଣି ଏଥିରେ ଅଉ କଣ ଅବା ଥିବ । ତେଣୁ ତୁମ୍ଭେ କପିଳନାଥଙ୍କ ଦେବାଳୟରେ ଗୋଟିଏ ସଭା ବସାଅ । ବ୍ରାହ୍ମଣ, ବୈଷ୍ଣବ, ବୈଶ୍ୟ, ଶୂଦ୍ର ଭଲଲୋକ ଏବଂ ମନ୍ଦଲୋକ ସମସ୍ତେ ଅସନ୍ତୁ । ସମସ୍ତଙ୍କ ପାଇଁ ଭଲରୂପେ ଖାଇବା ପିଇବା ଯୋଗାଡ଼ କର । ତମ୍ବା ତୁଳସୀ ଶାଳଗ୍ରାମ ଓ ହରିବଂଶ ପୋଥି ରଖ । ଅମେ ବାପ, ପୁଅ, ମା ଯିବା । ସେ ମା, ଝିଅ, ବାପ ଅସନ୍ତୁ । ଅମ ଦୁଇକୁଳର ଯାହା ଯାହା କଥା ନିଷ୍ପତ୍ତି ହେବ, ତାହା ସମସ୍ତେ ଥାଇ ନିଷ୍ପତ୍ତି ହୋଇଥିଲେ ଭବିଷ୍ୟତରେ ଅଉ କିଛି ହଇରାଣ ନ ଥିବ । ଏହା ଶୁଣି ବୁଢ଼ା ବୋଇଲା, ବାବୁ ରେ, ତୁ ପିଲା ହୋଇ ଭଲ କହିଲୁ ଯେଉଁ ସେହିପରି କରିବା । ଏପରି କହି କେଜଠ ବୁଢ଼ା କପିଳନାଥଙ୍କ ଦେବାଳୟରେ ସଭା ବସାଇଲା । ପୁଅ କହିବା ପ୍ରକାରେ ସବୁ ଠିକଣା କଲା । ନାନା ଜାତର ଅନେକ ଭଦ୍ରଲୋକ

ଆସି ବସିଲେ । କନ୍ୟାପକ୍ଷ ଏବଂ ବରପକ୍ଷ ଆସିଲେ । ସଭା ମଧ୍ୟରେ ଠିଆହୋଇ କେଉଁଠ ପୁଅ ତାର ମାଆକୁ ଚାହିଁ ବୋଇଲା, "ମା ! ଦେଖେ, କପିଳନାଥ ବାବୁ ବସିଅଛନ୍ତି । ଦେବାଳୟରେ ସବୁ କାତର ଲୋକେ ବସି ମହାସଭା କରିଅଛନ୍ତି । ତୁ ଏ ସମସ୍ତଙ୍କୁ ଚାହିଁ ତମ୍ବା, ତୁଳସୀ, ଶାଳଗ୍ରାମ ଧରି କହୁଟି ତୁ ମୋତେ ଜନ୍ମ କରିଅଛୁ କି ଆଣିଛୁ । ଏହା ଶୁଣି କେଉଁଠୁଣୀ ବୁଢ଼ୀର ଛାତି ଥରି ଉଠିଲା, ଭୁଣ୍ଡ ଖଣ୍ଡ ମାରିଗଲା, ସେ ଟିକେ ତୁନି ହୋଇ ବୋଇଲା– ନାହିଁରେ ପୁଅ, ମୁଁ ତୋତେ ଜନ୍ମ କରିନାହିଁ, କିଣି ନାହିଁ କି ଗୋଟେଇ ଆଣି ନାହିଁ । ବୁଢ଼ା କୁଆଡ଼େ ମାଛ ମାରି ଯାଇଥିଲା, ସେ ଜାଲରେ ଗୁଡ଼ାଗୁଡ଼ି କରି ଆଣି ଏତେ କଷ୍ଟକୁଷ୍ଟ କଲା । ମୁଁ ତ ପିଲାରଙ୍କୁଣୀ ହୋଇଥିଲି, ତୋତେ ପାଇବାରୁ ପୁଅ ବୋଲି ପାଳିଲି । ଏ କଥା ଶୁଣି ସଭାଲୋକେ ନିର୍ବେଦ ହୋଇ ଚାହିଁ ରହିଲେ । ପୁଣି ସେ କେଉଁଠପିଲା କରଣ ବୁଢ଼ୀକି ଚାହିଁ ବୋଇଲା—ତୁମେ ଏ ସଭାରେ ତମ୍ବା, ତୁଳସୀ, ଶାଳଗ୍ରାମ ଧରି କହ ସେ କାହାର ତୁମର ଝିଅ । ସେ କହିଲା—ନାହିଁ ରେ ବାପ, ସେ କାହାର ଝିଅ ମୁଁ କିଛୁ ଜାଣିନାହିଁ । ବୁଢ଼ା କୁଆଡ଼େ ଖଜଣା ଅସୁଲ କରିବାକୁ ଯାଇଥିଲା । ଆସିଲା ବେଳକୁ ତାର ସଙ୍ଗରେ ଆଣି ଘରେ ରଖିଲା । ମୋର ପିଲାଝିଲା କିଛି ନ ଥିବାରୁ ମୁଁ ତାକୁ ଝିଅ କରି ପାଳିଅଛି । ସେ ପିଲା ମୋ ଘରକୁ ଆସିଲାବେଳେ କଣ୍ଟା ପୋଖରୀ ପରି ତାର ଦେହ ହୋଇଥିଲା । ମୁଁ ପୋଖରୀ ଚିକିତ୍ସାରେ ରଖିବାରୁ ମାସକରେ ତାର ଦେହ ଶୁଖିଲା । ଆଜି ଏଡ଼େବଡ଼ ସଭାରେ ହଲପ ଧରି ମିଛ କହିବାକୁ ମୋତେ କି ଲାଭ । ତେଣୁ ସତ କଥାଟି କହି ଦେଲି । ଏହା ଶୁଣି ସଭାଲୋକେ ସେ କନ୍ୟାକୁ ପଚାରିଲେ, "ଏଥିରେ ତୋତେ କଣ କଣା ଅଛି ସତ୍ୟକରି କହଟି ।" ସେ କାନ୍ଦି କାନ୍ଦି ତାର

ପୂର୍ବକଥାଯାକ ମୂଳରୁ ଶେଷଯାଏ ଗୋଟି ଗୋଟି କରି ଅବିକଳ କହିଗଲା । ସଭାଲୋକେ ଏ ସବୁ ଘଟଣା ଶୁଣି ନିଶ୍ଚୟ କରି କହିଲେ, "ଏ ଦୁହେଁ ମାତା ପୁତ୍ର, ଏଥିରେ ସନ୍ଦେହ ନାହିଁ । କରଣ, କେବଟ ଦୁହେଁ ଖଣ୍ଡଦିଅ, ସେ ମା ପୁଅ ଆନନ୍ଦରେ ତାଙ୍କ ଘରକୁ ଚାଲିଯାଆନ୍ତୁ ।" ସଭା ଲୋକଙ୍କଠାରୁ ଏପରି ଅନୁମତି ପାଇ ସାଧବପୁତ୍ର ତାର ମାତା ଚରଣରେ ଦଣ୍ଡପ୍ରଣାମ କରି ତାକୁ ଶଗଡ଼ରେ ବସାଇ ପିତାଘରକୁ ଯିବା ପାଇଁ ବାଟେ ବାଟେ ବାହାରିଲା । କେବଟ କରଣ ଦୁହେଁ ବୋକା ହୋଇ ଯେ ଯାହା'ର ଘରେ ରହିଲେ । ସଭା ଭଙ୍ଗ କରି ଭଦ୍ରଲୋକେ ଗଲେ । ଏଣେ ମା ପୁଅ ଦୁହେଁ ଯେ ଯାହାର ଦୁଃଖ କୁହାକୁହି ହୋଇ ଶଗଡ଼ରେ ବସି ଯାଇ ଯାଇ କେତେକ ଦିନ ପରେ ଯାଇ ମନୋହରପୁର ନିକଟରେ ପହଞ୍ଚିଲେ । ଗଲାବେଳକୁ ସାଧବଘର ଭାଙ୍ଗିରୁଜି ଭିହ ହୋଇଗଲାଣି । ତହିଁରେ ଗଛ ଉଠି ଫଳ ଫଳିଲାଣି । ପୁଅ ତ ପୂର୍ବକଥା କିଛି ଜାଣେ ନାହିଁ । ମା'କୁ ପଚାରିଲା ଆମ ଘର ପରା ଏହି ଗ୍ରାମରେ, କାହିଁ କେଉଁଘର ଦେଖା'ଟି ? ମା ବୋଇଲା ଅରେ ପୁଅ ତୋତେ କଅଣ କହିବି ? ଏହି ପଡ଼ିଆ ଭିହରେ ଷୋଳପୁର ଉଆସ ଥିଲା । ସେହି ଉଆସରେ ତୋର ବାପ ବଡ଼ବାପ ଥିଲେ । ଦାଦିମାନେ ଏବଂ ବଡ଼ ମା ମାନେ ଥିଲେ, ଧନ ସମ୍ପଦରେ ଘର ପୂରି ଉଠୁଥିଲା । ଏବେ ତ କେହି ନାହାନ୍ତି । ଘର ଭାଙ୍ଗି ଭିହ ହୋଇଗଲାଣି । ତତେ ଆଉ କଣ ଦେଖାଇବି । ଏହା ଶୁଣି ପୁଅ ବୋଇଲା, ଅମେ ଅଉ ଚିନ୍ତା ପଡ଼ିବା ନାହିଁ । ବେପାର କରି ଅଣିଥିଲା ପରି ଗୋଟିଏ ଘରଭଡ଼ା କରି ରହିବା । ଏଠାରେ କେତେ ଦିନ ରହିଲେ ଅବଶ୍ୟ ସେମାନଙ୍କର ତଥ୍ୟ ଖବର ମିଳିବ । ଏମନ୍ତ ବିଚାର କରି ଗୋଟିଏ ଦୋତାଲା ଘରଭଡ଼ା ନେଇ ରହିଲେ । ଗୋଟିଏ ଲୁଗା ଦୋକାନ କରି ବିକାକିଣା

କରୁଥାନ୍ତି । ସାହପଡ଼ଶା ଲୋକଙ୍କୁ ସାଧବ ଘର କଥା ପଚାରିବାରୁ ସେମାନେ କହିଲେ, ତାର ସାନବୋହୂ ଗଲାଦିନୁ ତା ଘରକୁ କି ପାପଦଶା ପଡ଼ିଲା ଯେ ଘର ପୋଡ଼ିଗଲା, ଧନ ଦ୍ରବ୍ୟ ଲୁଅଡ଼େ ଉଡ଼ିଗଲା । ଖାଇବାକୁ ପିନ୍ଧିବାକୁ ନ ପାଇ ହାଡ଼ ଗିଡ଼ା ହୋଇ ବଂଶଯାକ ବଡ଼ ହୀନଅବସ୍ଥାରେ ଅଛନ୍ତି । ଘର ନାହିଁ ସେ କାର ବାରଣ୍ଡାରେ କୁଟି ତାଳପତ୍ର କୁଡ଼ିଆ କରି ରହିଅଛନ୍ତି । ପ୍ରତିଦିନ ବଂଶଯାକ ବଣକୁ ଯାଇ କାଠ ବୋଝେ ଲେଖେଁ ଆଣି ବଜାରରେ ବିକିଲେ ଯାହା ମିଳୁଅଛି ତହିଁରେ ଦରଖିଆ ଦରଭୋକିଆ ହୋଇ ରହିଅଛନ୍ତି । ଏକଥା ଶୁଣି ସାଧବ ବୋହୂ କପାଳରେ ହାତମାରି ବଡ଼ ବିକଳରେ କାନ୍ଦିଲା । ପୁଅ ବୋଇଲା, "ଆମେ ତ କପାଳ ଦଶା ଭୋଗ କରି କେତେ ଦୁଃଖରେ ଏଠାକୁ ଆସିଲେ, ତାହା ନିଜେ ଭୋଗିଅଛୁ, ଆଜ ପରପାଇଁ କାହିଁକି ଏତେ ଶୋକ କରିବା ।" ବଡ଼ପୁରୁଷେ କହିଛନ୍ତି, "ଆପେ ମଲେ ଯୁଗବୁଡ଼ି, ପରମଲେ ପାଣିବୁଡ଼ି" ଏଥିପାଇଁ ଚିନ୍ତା କଣ ? ଦେଖିବା ମୁଁ କଲ୍ କରି ବୁଝେ । ମା'କୁ ଏପରି କହି ବଜାର ଦାଣ୍ଡକୁ ଯାଇ ଛିଡ଼ାଏ ବସିଛି, ସେତିକିବେଳେ ସାଧବ ଘର ବଂଶଯାକ କାଠ ବୋଝେଲେଖେଁ ମୁଣ୍ଡରେ ଧରି ବିକ୍ରୀ କରିବାକୁ ଆସିଲେ । ତାଙ୍କୁ ସେ ପିଲାଟି କହିଲା, "କାଠ ବୋଝକ କେତେ ନେଇ ବିକୁଅଛ ।" ସେମାନେ କହିଲେ, "ଦୁଇଅଣା ଲେଖେଁ ଦେଉଅଛୁଁ ।" ପିଲାଟି ବୋଇଲା, ମୁଁ ତିନିଅଣା ଦେବି । ପ୍ରତିଦିନ ମୋ ଦୁଆରେ ସବୁଯାକ ଦେଇ ପଇସା ନେଇ ଯାଉଥିବ । ଏହା ଶୁଣି ସେମାନେ ବଡ଼ ଆନନ୍ଦରେ ତାକୁ ସେ କାଠଯାକ ଦେଇ ପଇସା ଗଣିନେଲେ । ଏପରି ଦୁଇ ତିନିଦିନ ଗଲାପରେ ପିଲାଟି କହିଲା କାଲି ମୋର ଗୋଟେ ଅଡ଼େ ଯିବାକୁ ଅଛି । ତୁମ୍ଭେମାନେ କେଲ ସହରେ ଥାଇ ଆସିଲେ ମୁଁ ପଇସା ଦେଇ

ଚାଲିଯିବ । ଏହା ଶୁଣି ସେମାନେ ସେହିପରି ଅସିବୁ ବୋଲି କହି ଫେରିଗଲେ । ଅବଦିନ ଏ ମା ପୁଅ ଦୁହେଁ ବେଳ ପ୍ରହରେ ଥାଇ ଥାଇ ଦେ ମଡ଼ୁଲ୍ଭ ଉପରେ ବସି ଦାଣ୍ଡକୁ ଚାହିଁଛନ୍ତି, ତେଣୁ ସେ ପନ୍ଦରଜଣଯାକ କାଠ ବୋଝେ ଲେଖେଁ ମୁଣ୍ଡେଇ ଧାଇଁ ଲାଗି ଅସିଲେ । ସାବିତ୍ରୀ ବୋଇଲା—ମା, ଏମାନେ ତୋର କିଏ କଣ ହେବେ କହିଲୁ । ସଧବ ବୋହୂ ତାଙ୍କର ଏ ଦଶା ଦେଖି ବଡ଼କଲରେ କାନ୍ଦି କାନ୍ଦି ଅଗୁଠି ଦେଖାଇ ଗୋଟି ଗୋଟି କରି ପୁଅକୁ ଚିହ୍ନାଇ ଦେଲା । ତହିଁପରେ ସାବିତ୍ରୀ ତଳକୁ ଅସି ସେମାନଙ୍କୁ କହିଲା, "ତୁମ୍ଭେମାନେ ଅଜଠାରୁ ଅଉ କାଠ ହାଣିବାକୁ ଯାଅ ନାହିଁ । ମୁଁ ଭଲ ଲୁଗାପଟା ଦେଉଅଛୁ ପିନ୍ଧ । ଅଉ ପାଞ୍ଚହଜାର ଟଙ୍କା ମୋ ଠାରୁ ନିଅ । ଗୋଟିଏ ଘର ଭଡ଼ା କରି ତହିଁରେ ରହି ପାଞ୍ଚଜଣ ପୁରୁଷ ବେପାର ବଣିଜ କର । ଅଉ ଦଶଜଣ ତୁମ୍ଭର ଯେଉଁଠି ଜାଗା ଅଛି, ସେହି ଜାଗାରେ ଘର ତୋଳାଇବାକୁ ଲାଗ । ଅତି ସୁନ୍ଦର କୋଠାଘର ତିଆରି କର । ଯେତେ ଟଙ୍କା ଲାଗୁ ସବୁ ମୋଠାରୁ ଅସି ନେଇ ଯାଉଥିବ । ଅଜଠାରୁ ତୁମ୍ଭର ସ୍ତ୍ରୀଲୋକମାନେ ଦାଣ୍ଡକୁ ବାହାରିବେ ନାହିଁ । ତୁମ୍ଭେ ବେପାରରେ ଲାଭ ପାଇଲେ ମୋର ଧନଯାକ ଅସ୍ତେ ଅସ୍ତେ ଶୁଝିଦେବ ।" ଏହା କହି ତାଙ୍କୁ ଅନେକ ଲୁଗାପଟା ଦେଇ ନଗଦ ଦଶହଜାର ଟଙ୍କା ଗଣିଦେଲା । ସେମାନେ ଅଭ ଉଷ୍ଣଦାନ ପାଇଲା ପରି ଆନନ୍ଦ ହୋଇ ତତ୍କ୍ଷଣେ ଗୋଟିଏ ଘରଭଡ଼ା ନେଇ ରହିଲେ । ସେଦିନ ରାତିରେ ସାତଭାଇଯାକ ବସି କିଏ କଣ କରିବା ବୋଲି ବିଚାର କରୁଅଛନ୍ତି, ସେତିକିବେଳେ ବୁଢ଼ା ଉଠି କହିଲା, "କିରେ ! ଟଙ୍କାଗୁଡ଼ାକୁ କଣ ଗୁଡ଼ୁମୁଆଁ ବୋଲି ବିଚାରିଲ କି ? ଲେଖା ନାହିଁ ପଢ଼ା ନାହିଁ, ଦସ୍ତାବେଜ ନାହିଁ, ପଞ୍ଚନାହିଁ, ସାକ୍ଷୀ ନାହିଁ, ସନ୍ତକ ନାହିଁ । କୁଆଡ଼ୁ ଅଚହ୍ନା ଲୋକୁଟେ ଅସି

ତୁମ୍ଭଙ୍କୁ ଟଙ୍କାଗୁଡ଼େ ଦେଇ ପଠାଇଅଛି ବୋଲି ଆନନ୍ଦ ହୋଇଛ କି ? ମୁଁ ଏଥିରୁ ଜାଣୁଅଛି ସେଇଟା ବଡ଼ ଦୁଷ୍ଟ ଲୋକ ହୋଇଥିବ । ଟଙ୍କା ଦେଇ ଆମ ସଙ୍ଗେ ବିଶ୍ୱାସ କରି ପାନେ ଆମ୍ଭଙ୍କୁ ପେଲିଆ ଦେବ । ତା ଟଙ୍କାପାଇ ନେଇ ବେଗେ ତାକୁ ବାହୁଡ଼ାଇ ଦିଅ ।” ଏହା ଶୁଣି ପୁଅମାନେ ବୋଇଲେ—ତୋର ବୁଦ୍ଧିରେ ପଡ଼ି ଆମେ ସାନବୋହୂକୁ ଛାଡ଼ ଦେଲୁ ଯେ, ସେ ଗଲାଦିନୁ ଆମର ସୁନା ଘର ଚୂନା ହୋଇଗଲା । ଆମେ ଯେତେ ହୀନଅବସ୍ଥା ହେଲୁ ତାହା କହିଲେ ନ ସରେ । ଏବେ ସେହିପରି ବୁଦ୍ଧି ଶିଖାଉଅଛୁ ଯେ, ଆମେ ତୋର କଥାରେ ଥିବୁ କି ? ଏହା କହି ସାନ ପାଞ୍ଚଭାଇ ବେପାରରେ ଲାଗିଲେ । ବଡ଼ ଦୁଇଭାଇ ଘର ତୋଳାରେ ଲାଗିଲେ । ଗୁରି ପାଞ୍ଚମାସ ସରିକି ବେପାରରୁ ଦୁଇଗୁଣ ଟଙ୍କା ଲାଭ ହେଲା । ଏଣେ ଘରତୋଳା ଶେଷ ହୋଇଗଲା । ତହିଁପରେ ସେ ସମସ୍ତେ ଯାଇ ହୀରାଲାଲକୁ କହିଲେ —ବାବୁ ! ତୁମ୍ଭ ଦୟାରୁ ଆମ୍ଭେ ବେପାରରୁ ଅନେକ ଟଙ୍କା ଲାଭ କଲୁ । ଏଣେ କୋଠାଘର ତିଆରି ସରିଲାଣି । ଏଣିକି ଯାହା କହିବ ତାହା କରିବୁଁ । ହୀରାଲାଲ ବୋଇଲା, ଭଲଦିନ ଦେଖି ଆଗ ଘର ପ୍ରତିଷ୍ଠା କର । ତହୁଁ ପରେ ଯାହା କରିବ ମୁଁ କହିବି । ଏ କଥା ଶୁଣି ସାଧବ ପୁଅମାନେ ଭଲଦିନ ବୁଝି ପ୍ରତିଷ୍ଠା ଜିନିଷ ଯୋଗାଡ଼ କରି ହୀରାଲାଲକୁ ଯାଇ କହିଲେ, ସବୁ ଠିକଣା ହେଲା । କାଲି ସକାଳୁ ତୁମ୍ଭେ ଯାଇ ବସିଲେ ଘର ପ୍ରତିଷ୍ଠା ହେବ । ଏହା ଶୁଣି ହୀରାଲାଲ ତହିଁରେ ରାଜି ହୋଇ ଆର ଦିନ ସକାଳୁ ଯାଇ ନୂଆ ଘରେ ପହଞ୍ଚିଲା । ସାଧବଘର ସମସ୍ତେ ନୂଆଲୁଗା ପିନ୍ଧିଲେ । ପୁରୋହିତ ବସି କର୍ମ ଆରମ୍ଭ କଲେ । ସେତିକିବେଳେ ହୀରାଲାଲ ସାଧବାଣୀ ବୁଢ଼ୀକି ପଚାରିଲା ତୁମ୍ଭର ସାତ ପୁଅ ଅଛନ୍ତି ଏବଂ ଛଅ ବୋହୂ ଅଛନ୍ତି ଆଉ ଗୋଟିଏ ବୋହୂ କେଉଁଆଡ଼େ ଗଲେ ?

ଏହା ଶୁଣି ବଂଶଯାକ କାନ୍ଦ ଜୁଟିଲେ । ବୁଢ଼ୀ ପୂର୍ବ କଥାଯାକ ସବୁ କହି ସେ ମଧ୍ୟ କାନ୍ଦଲା । ତାହା ଶୁଣି ହୀରାଲାଲ ବୋଇଲା ଅଜ୍ଞ ଶୁଭ ଦିନରେ ଅଜ ଏପରି କାନ୍ଦ ବୋବା କର ନାହିଁ । ତୁମ୍ଭର ତ ଛଅ ବୋହୂ ଅଛନ୍ତି, ଏଠିକୁ ମୋର ମା ଅସନ୍ତୁ ଯେ ସାତଜଣ ହୋଇଯିବେ । ଅଜ୍ଞ ପ୍ରତିଷ୍ଠା ବିଧି ଶେଷ ହେଲେ ଅମେ ମା ପୁଅ ଦୁହେଁ ଅମ ଘରକୁ ଯିବୁଁ । ତୁମ ସୁଖେ ତୁମେ ରହିବ । ସେ ଏପରି କହିବାମାତ୍ରେ ସାଧବ ପୁଅମାନେ ତକ୍ଷଣେ ସୁଆର ନେଇ ହୀରାଲାଲର ମାତାକୁ ଅଣିବା ପାଇଁ ଗଲେ । ହୀରାଲାଲ ମଧ୍ୟ ତାଙ୍କ ସଙ୍ଗେ ଥାଏ । ସାଧବ ସାନବୋହୂ ହୀରାଲାଲର ମାତା ତାର ଶାଶୁ ସମସ୍ତଙ୍କ ପାଟଶାଢ଼ୀ ଖଣ୍ଡିକ ବହିଥିଲା । ସେହି ଶାଢ଼ୀଟି ପିନ୍ଧି ସୁଆରରେ ବସିଲା । ସେ ଘରକୁ ଅସିବାରୁ ବଡ଼ ବୋହୂମାନେ ବୋଇଲେ ଏ ପାଟଶାଢ଼ୀ ତ ଅମ ସାନଯାଅର ବାହାଘର ପାଟଶାଢ଼ୀ ? ଏ କେଉଁଠୁ ପାଇଲା । କି ଅବା ସତେ ଦଇବ ଅଣି ଅମର ସାନ ଯାଅକୁ ଦେଲା କି ? ଏପରି କହି ସବୁ ଯାଅଯାକ ବେଢ଼ି ଦେଖିଲା ବେଳକୁ ସତକୁ ସତ ସେହି ତାଙ୍କର ସାନ ବୋହୂ । ସେଠୁ କୁଣ୍ଢାକୁଣ୍ଢି ହୋଇ ଯାଅମାନେ କାନ୍ଦିଲେ । ସାନବୋହୂ ସବୁରି ଗୋଡ଼ତଳେ ପଡ଼ି ଯେତେ ଦୁଃଖ ପାଇଥିଲା, ପଛେ ପୁଅକୁ ଯେପରି ପାଇଲା ତା ସବୁ କହିଲା । ସାଇ ପଡ଼ିଶା ସାଇସଙ୍ଗାତୁଣୀମାନେ ଅସି ପରସ୍ତସଙ୍ଖୁଳା କଲେ । ଅନେକ ଉତ୍ସବରେ ଘର ପ୍ରତିଷ୍ଠା ହେଲା । ବାପ ଓ ଦାଦାମାନେ ହୀରାଲାଲକୁ କୋଳକରି ମହାଅନନ୍ଦରେ ଘରେ ସବଦାର କରି ରଖିଲେ । ହୀରାଲାଲର ପାଦ ପଡ଼ିବାମାତ୍ରେ ପୂର୍ବପରି ଘରେ ଅଚଳ ଲକ୍ଷ୍ମୀ ବିଜେ କଲେ । ଏହା ଦେଖି ସାଧବ ବୁଢ଼ା ଅଉ ସମ୍ଭାଳି ପାରିଲା ନାହିଁ । ସେ ରାଗରେ ଜରଜର ହୋଇ କ୍ଷଭ ଜପୁଡ଼େଇ ମରିଗଲା । ପୁଅ ବୋହୂମାନେ ତାର ଏ ଗୁଣ ସବୁଦିନକୁ

ଲୋକେ ଜାଣୁଥାନ୍ତୁ ବୋଲି ତାର ପ୍ରତିମୂର୍ତ୍ତିଟିଏ ପଥରରେ ଗଢ଼ାଇ ସେଠାରେ ବସାଇ ଦେଇ ଅଛନ୍ତି ଯେ, ଆଜ ପର୍ଯ୍ୟନ୍ତେ ସେହିପରି ଅଛି । ଅରେ ଅବୋଲକରା, ଏ କଥା ଏତିକି; ଫୁଲ ଫୁଟିଚି କେତେକା ।

## ମୂର୍ଖ ପଣ୍ଡିତ କଥା

ଜଭ ଉପୁଜା ସୌଦାଗର କଥା କହି ସମନ୍ତ ବ୍ରାହ୍ମଣ ସେଠାରୁ ଯିବାପାଇଁ ବାହାରିଲେ । ଅବୋଲକରା ଲୁଗା ପଟା, ବାସନ କୁସନ ଭାର ଧରି ତାଙ୍କ ପଛେ ପଛେ ଗୃଲିଲା । ଯାଇ ଯାଇ ଦୁଇ ତିନି ଓଳିର ବାଟ କମେ କମେ ପାର ହୋଇଗଲା । ତହିଁ ପରେ ମଣିଭଦ୍ରପୁର ନାମକ ଗୋଟିଏ ଗ୍ରାମ ପଡ଼ିଲା । ସେଠାରେ ବେଳ ଉଚ୍ଚୁର ହୋଇ ଯିବାରୁ ସେହି ଗ୍ରାମର ପୋଖରୀ କୂଳ ବରଗଛ ମୂଳରେ ରହିଲେ । ସେଠାରେ ରନ୍ଧାବଢ଼ା କରି ଖିଆପିଆ ସାରିଲେ । ସାମନ୍ତଙ୍କୁ ଅଣକେତ ଲାଗିବାରୁ ସେ ମୃଗଛାଲରେ ଶୋଇ ଟିକେ ବିଶ୍ରାମ କରୁଅଛନ୍ତି । ଅବୋଲକରା ଏଠାରେ କଣ ହେଲେ ଅପୂର୍ବ କଥା ଥିବ ବୋଲି ଏଣେ ତେଣେ ବୁଲି ବୁଲି ଦେଖିଲା ଯେ ଗୋଟିଏ ତୁଳସୀ ଚଉରା ଅଛି । ତାର ଚାରିପଟେ ଗୃଦନା ବନ୍ଧାହୋଇ ଉପରେ ଘୁମୁଣ୍ଡିଆ ହୋଇଅଛି । ସେ ଗୃଦନାର କାଉରେ ଶିଳାଲିପିରେ ଲେଖାହୋଇଅଛି, 'ମୂର୍ଖ ପଣ୍ଡିତଙ୍କ ପରି ଆଚରଣ କରନାହିଁ, କଲେ ନିଶ୍ଚେ ପ୍ରମାଦରେ ପଡ଼ିବ ।' ଅବୋଲକରା ତାହା ପଢ଼ି ଭାବିଲା, କଣ ମୂର୍ଖ ପଣ୍ଡିତଙ୍କ ପରି କରିବ ନାହିଁ । ପଣ୍ଡିତ ଗୁଡ଼ାକ କିପରି ମୂର୍ଖ ହେଲେ ? ଏପରି କାହିଁକି ଲେଖା ହୋଇଅଛି ? ଏହି କଥା ଭାବି ଭାବି ଲେଉଟି ଆସି ସାମନ୍ତଙ୍କୁ ବୋଇଲା—ଗୋସାଇଁ, ଏହି ଗ୍ରାମର ତୁଳସୀ ଚଉରା ପାଖ ଗୃଦନା କାଉରେ ଶିଳାଲିପି ଖୋଳା ହୋଇଅଛି

ସେହି ବାଟରେ ଯିବା । ଏପରି ପଣ୍ଡିତ ବୁଦ୍ଧିରେ ନିଶ୍ଚୟ କରି ସେ ଶବଦାହକାରୀଙ୍କ ଯିବା ବାଟରେ ଯାଇ ମଶାଣି ପଦାରେ ପହଞ୍ଚିଲେ । ସେ ମଶାଣି ପଦାରେ ଗୋଟିଏ ଗଧ ଚରୁଥିଲା । ସେ ଗଧଟାକୁ ଦେଖି ଏ ମୂର୍ଖ ପଣ୍ଡିତମାନେ ବିଚାର କଲେ—"ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ଶତ୍ରୁ ବିଗ୍ରହେ । ରାଜଦ୍ୱାରେ ଶ୍ମଶାନେ ଚ ଯଃ ତିଷ୍ଠତି ସ ବାନ୍ଧବଃ ।" ଉତ୍ସବ କାଳରେ, ବ୍ୟସନ କାଳରେ—ଅର୍ଥାତ୍ ଜୁଆଖେଳ, ବେଶ୍ୟାସଙ୍ଗ ବା ମାଲମୋକଦ୍ଦମା କରିବାକୁ ମନ ପ୍ରବୃତ୍ତଥିବା ସମୟରେ, ଦୁର୍ଭିକ୍ଷ କାଳରେ, ଶତ୍ରୁ ଉପସ୍ଥିତ ହେବା କାଳରେ, ରାଜଦ୍ୱାରରେ ଏବଂ ଶ୍ମଶାନରେ ଯେ ବ୍ୟକ୍ତି ଉପସ୍ଥିତ ହୋଇଥାଏ, ତାହାକୁ ନିଜର ବନ୍ଧୁ ବୋଲି ଜାଣିବ । ଏପରି ଶ୍ଳୋକ ଅର୍ଥ କରି ସେ ମୂର୍ଖ ପଣ୍ଡିତମାନେ କହିଲେ, ଏ ଗଧ ଶ୍ମଶାନରେ ଉପସ୍ଥିତ ହୋଇଅଛି । ଶ୍ଳୋକ ଅର୍ଥକୁ ବିଚାର କଲେ ଏ ଆମ୍ଭର ବନ୍ଧୁ ହେଲା । ଚାଲ, ଚାରିଜଣ ଯାକ ଏହାକୁ ଆଦର କରି ଅଭ୍ୟର୍ଥନା କରିବା । ଏହା ନିଶ୍ଚୟ କରି ଜଣେ ପାଣି ଗାଳେ ଧରି ସେ ଗଧର ଗୋଡ଼ ଧୋଇବାକୁ ଗଲା । ଆଉ ଜଣେ ତାର ବେକକୁ କୁଣ୍ଢେଇ ମୁହଁରେ ଚୁମ୍ବନ ଦେବାକୁ ଲାଗିଲା । ଆଉ ଜଣେ ତାର ଗୋଡ଼ ଚିପିଦେବି ବୋଲି ଗଲା । ଆଉ ଜଣେ ପ୍ରିୟ ସମ୍ବାଦ ପଚାରିବି ବୋଲି ଆଗରେ ଯାଇଁ ବସିଲା । ଏପରି ସେ ଗଧଟା ସଙ୍ଗେ ଲାଗିବାରୁ ସେ ସିନା ଠିଆ ହୋଇଥିଲା । ସେହିକ୍ଷଣି ଚମକି ପଡ଼ି ପଳାଇ ଯିବାକୁ ବାହାରିଲା । ଲୋକେ ତ କହନ୍ତି—ମଠୁଆ ନ ଚଳିଲେ ନାହିଁ ଚଳିଲେ ଲଙ୍ଗଳ ଯୁଆଳି ଭାଙ୍ଗେ । ସେହିପରି ଗଧ ଯେତେ ମଠୁଆ ହେଲେ କଣ ହେବ । ତାକୁ ଚାରିଆଡ଼ୁ ଏ ଚାରିଜଣ ବେଢ଼ି ଯିବାରୁ ଉଡ଼ୁଳନା ଦଉଡ଼ି ପଳାଇବା ପାଇଁ ଏ ଚାରିଟାଯାକୁ ଟକଟା ମନ୍ଥାକରି ଡେଇଁଗଲା । ଏମାନେ ବୋଇଲେ ହଁ ହଁ ମହାଶୟ, ଆପଣ ଆମର ପରମବନ୍ଧୁ ବୋଲି ଅଭ୍ୟର୍ଥନା କରୁ କରୁ ଆପଣ

କାହିଁକି ଏଡ଼େ କୋଧ ହେଉଅଛନ୍ତି ? ସୁସ୍ଥିର ହୁଅନ୍ତୁ, ଆଉ ଆମ୍ଭର ଅପରାଧ ଥିଲେ କ୍ଷମା କରନ୍ତୁ ।

ଏହିରି କହୁ କହୁ ତାର ପଛେ ପଛେ ଗୋଡ଼ାଇଲେ । ଏମାନେ ପଛଅଡ଼ୁ ଯେତେ ଗୋଡ଼ାଇଲେ, ସେ ତତେ ବେଗରେ ଧାଇଁ ପଳାଇଲା । ସେ ସ୍ଥାନର ଜଣେ ଲୋକ ଏ ଘଟଣା ଦେଖି ଯାଇ ଯେଉଁ ଧୋବାର ସେ ଗଧ ତାକୁ କହିଲା—ତୋର ଗଧଟାକୁ କେଉଁଠିଅଡ଼ୁ ଗୁରିଟା ଚୋର ଆସି ବାନ୍ଧିନେବାକୁ ଲାଗିଅଛନ୍ତି । ଧୋବା ଏ କଥା ଶୁଣିବାମାତ୍ରେ ତାର ପୁଅ ଓ ଭାଇ ଓଗେରର ପାଞ୍ଚ ସାତଜଣ ଠେଙ୍ଗା ପଟେ ପଟେ ଧରି କୁଏ ରେ ଚୋର; ଆମର ଗଧ ନେଉଅଛ ବୋଲି ସେ ଗୁରି ପଣ୍ଡିତଯାକଙ୍କୁ ପିଟିବା ପାଇଁ ଘେରିଗଲେ । ଧୋବାମାନଙ୍କର ଉଗ୍ରମୂର୍ତ୍ତି ଏବଂ ଠେଙ୍ଗା ଉଞ୍ଚାଇବା ଦେଖି ସେମାନେ ଭୟରେ ଥରି ଥରି କହିଲେ, ଆମ୍ଭେ ତୁମ୍ଭର ଗଧକୁ ନେଉ ନାହୁଁ । ପାଠ ଅନୁସାରେ ସେ ଆମ୍ଭର ବନ୍ଧୁ ହେଲେ ବୋଲି ତାଙ୍କୁ ଅଭ୍ୟର୍ଥନା କରୁଥିଲୁ । ଧୋବାଗୁଡ଼ାକ ଅଭ୍ୟର୍ଥନା ବୋଇଲେ କଣ ତାହା କାହିଁକି ବୁଝିବେ; ଚୋର ବୋଲି ସେ ଗୁରିଜଣଯାକଙ୍କୁ ଚଉକାଠି କରି ବାନ୍ଧି ନେଇଗଲେ । ଏଁକୁ ନେବାରୁ କେତେକ ଭଦ୍ରଲୋକ ଆସି ଦେଖିଲେ ସେ ଗୁରିଜଣଯାକ ବ୍ରାହ୍ମଣ, ପୁଣି ପଣ୍ଡିତ ଅଟନ୍ତି । ତେଣୁ ଧୋବାକୁ ଗାଳିମନ୍ଦ ଦେଇ ଏମାନେ ଚୋର ନୁହନ୍ତି ବୋଲି ଫିଟାଇ ଦେଲେ । ପରେ ସନ୍ଧ୍ୟା କରି ସେମାନଙ୍କର ପାଣ୍ଡିତ ବଡ଼ପଣ ବୁଝିବାରୁ ଏମାନେ ଅନେକ ପାଠ ପଢ଼ିଥିବାର ଜାଣିପାରି ଗୋଟିଏ ବସାଘର ଦେଇ ରଖାଇଲେ । ତହିଁପରେ ତାଙ୍କୁ ଭୋଜନ ଦେବାପାଇଁ ସେହି ଗ୍ରାମର ଗୃହଧର ବ୍ରାହ୍ମଣ ସେ ଗୁରିଜଣଙ୍କୁ ନିମନ୍ତ୍ରଣ କଲେ । ତହିଁ ମଧ୍ୟରୁ ଗୋଟିଏ ଘର ଚକୁଳି ପିଠା କରିଥିଲା । ତହିଁରୁ ଚକୁଳିଗୁଡ଼ାଏ, କ୍ଷୀର ମଣ୍ଡେ, ଭଣ୍ଡାରୁ କରୁ ବାଢ଼ି ପ୍ରଥମ ଜଣକୁ ଡାକି ନେଲା । ସେ ଯାଇ

ଇବାକୁ ବସିଲାବେଳେ ଦେଖିଲା ଯେ, ଗୋଟେ ଗୋଟେ କୁଲରେ ୨୦।୩୦ଟା ଲେଖାଏଁ ଘଣା ଅଛି । ତାହା ଦେଖି ଚାରିଲା—'ଛିଦ୍ରେଷ୍ୱନର୍ଥା ବହୁଳୀ ଭବନ୍ତି ।' ଛିଦ୍ରମାନଙ୍କରେ ହୁତ ଅନର୍ଥ ଥାଏ । ଏ ଛିଦ୍ର ପିଠଗୁଡ଼ିକ ଖାଇଲେ କେଜାଣି ଅନର୍ଥ ଘଟିବ ? ଅତଏବ ଏହା ଖାଇବା ଉଚିତ ନୁହେ । ଏପରି ଶ୍ଳୋକ ଅର୍ଥକୁ କଳ୍ପନା ଉଠି ଉପସରେ ପଳାଇଗଲା । ଦ୍ୱିତୀୟ ଣକୁ ଯେଉଁ ଘର ଭୋଜନ ଦେବାକୁ ଡାକି ନେଇଥିଲା, ସେ ଗୋଟିଏ ଧନୀଘର । ସେ ଅତିଥି ସତ୍କାର କରିବା ପାଇଁ ଶଙ୍ଖାରେ ାଲି, ଭଜା, ଅମ୍ବିଲ, ବେସର, ପଚଡ଼ି, ଶୁକ୍ତ ଏହିପରି ଦଶପନ୍ଦର କାର ତୁଣ ଶାଗ ବାଢ଼ିଥିଲା । ତାହା ଦେଖି ଏ ପଣ୍ଡିତ ବିଚାରିଲା, ଅତି ଦର୍ପେ ହତା ଲଙ୍କା, ଅତିମାନେ ଚ କୌରବାଃ । ଅତି ାନେ ବଳିର୍ବଦ୍ଧୋ ସର୍ବମତ୍ୟନ୍ତ ଗର୍ହିତଂ ।" ଯେ କୌଣସି ଷୟ ଅତ୍ୟନ୍ତ ହେଲେ ଗରହିତ ବିନା ହିତ ହୁଏ ନାହିଁ । ଏ ମା ପାଇଁ ଅତ୍ୟନ୍ତ କରି ତୁଣ ଶାଗଗୁଡ଼ିକ ବାଢ଼ି ଅଛି । ମୁଁ ଏହା ାଇଲେ ନିଶ୍ଚେ ଗରହିତ ହେବ । ଏମନ୍ତ ବିଚାରି କରି ତାହା ଖାଇ ପଳାଇଗଲା ।

ତୃତୀୟ ଜଣକୁ ଯେ ଡାକି ନେଇଥିଲା, ସେ ତାକୁ ପ୍ରଥମେ ନେକ ଆଦର କରି ଫୁଲ ଚନ୍ଦନ ଦେଇ ବହୁତ ପ୍ରିୟକଥା ପଚାରି ଗୋଟିଏ ଖଟିଆ ଆସନ ବସିବାକୁ ଦେଇ ତେଣେ ଭାତ ବଢ଼ାଉ ଛି । ତା ଦେଖି ସେ ପଣ୍ଡିତ ବିଚାରି କଲା—"ଅତିଅନ୍ତ ପ୍ରୀତି ରେ ଲଣ୍ଡଭଣ୍ଡ, ଅତିଅନ୍ତ ପ୍ରୀତ ହେଲେ ବାନ୍ଧୁ ତୁଣ୍ଡ ।" ଏପରି ଠରେ ଅଛି, ଏ ଲୋକ ମୋର ବନ୍ଧୁ ବାନ୍ଧବ ନୁହେ । ଏ କାହିଁକି ତେ ଆଦର କରୁଅଛି ? ଏଥିରୁ ଜଣାଯାଏ ପ୍ରଥମେ ଆଦର ରୁଅଛି, ପରେ ନିଶ୍ଚେ ଲଣ୍ଡଭଣ୍ଡ କରିବ । ମୁଁ ଏହା ଘରେ କବେ ମାନ୍ଧ ଖାଇବି ନାହିଁ । ଏମନ୍ତ ବିଚାରି କରି ଖାଇବାକୁ ଲୁ ଡାକୁ ଡରଡର ହୋଇ ପଳାଇଗଲା ।

ଚତୁର୍ଥ ଜଣକୁ ଯେ ଡ଼ଙ୍କ ନେଇଥିଲା, ତାର ଦୁଅଟେ ଛେଳିଗୁଡ଼ିଏ ବଡ଼ା ହୋଇଥିଲେ । ତାଙ୍କୁ ଦେଖି ଏ ପଣ୍ଡିତ ବିଗୁରିଲା, ଅଣ୍ଟ ମୁଠେ ଖାଇବାକୁ ଦେବ, କାଲ ସବୁଙ୍କୁ ଛେଳି ଜଗିବାକୁ ପଠାଇବ । ଖାଇବ କାହିଁକି, ଏତେ ହଇରାଣରେ ପଡ଼ିବ କାହିଁକି ? ଏମନ୍ତ ବିଗୁରି କରି ସେ ମଧ୍ୟ ନ ଖାଇ ପଳାଇଗଲା । ଗୁରିଜଣଯାକ ଉପାସରେ ରହି ଗ୍ରତ ଘଡ଼ିଏ ଅଛୁ ଉଠିକରି ପଳାଇ ଗଲେ । ଯାଉଁ ଯାଉଁ ବେଳ ସାତଘଡ଼ି ହେଲା । ଗୋଟିଏ ଜାଗାରେ ସ୍ୱେପେଇ କରିବାକୁ ବିଗୁରି କଲେ । ଜଣେ ଘିଅ କିଣିବାକୁ ଗଲା । ଜଣେ ପରିବା କିଣିବାକୁ ଗଲା । ଜଣେ ଗ୍ରଉଳ କିଣିବାକୁ ଗଲା । ଜଣେ ରାନ୍ଧିବ ବୋଲି ଗାଧୋଇ ଗଲା । ଗ୍ରଉଳ କିଣିବାକୁ ଯେ ଯାଇଥିଲା, ସେ ଅନେକ ପ୍ରକାର ଗ୍ରଉଳ ଦେଖି ଏଥିରେ ଏ ରୋଗ ଅଛି, ସେଥିରେ ସେ ରୋଗ ଅଛି, ଏମନ୍ତ ବାଛି ବାଛି ପରିଶେଷକୁ ମୋଟା ବଗଡ଼ା ଉଷୁନା ଗ୍ରଉଳରୁ ଦୁଇସେର କିଣି ଅଣିଲା । ପରିବା କିଣିବାବାଲା ସେପରି ବାଛି ବାଛି କଦଳମଞ୍ଜା, ମୂଳା, ବାଇଗଣଲୁଅ ଏଥିରୁ କିଛି ଭଲ ପଡ଼ିବା ବୋଲି ବାଛି ଅଣିଲା । ରାନ୍ଧିବା ଲୋକ ଗ୍ରଲୁ ଗ୍ରଲୁ ଭାତ ଫୁଟିଲାବେଳେ ଟକମକ ଶୁଣିବାରୁ ବିଗୁରିଲା—ଟକମକ ଦେବସ୍ୟ କୋଽର୍ଥଃ ? ଏହି ଯେଉଁ ଟକମକ ଶବ୍ଦ ବାହାରୁଅଛି, ଏହାର ଅର୍ଥ କଣ ? ଏମନ୍ତ ଭାବି ଭାବି ତାକୁ ଆଜ ସେ ଶବ୍ଦର ଅର୍ଥ ଜଣା ପଡ଼ିଲା ନାହିଁ । ତେଣୁ ଚିମା ପଥରଟେ ଅଣି ସେ ଭାତହାଣ୍ଡି ପରେ ଛେଚିଦେଲା । ପଥରଟା ପଡ଼ିବାରୁ ଠୋ ପରା ଶୁଭି ହାଣ୍ଡିଟା ଗୁଣ୍ଡା ହୋଇଗଲା, ଭାତପାଣି ଚୂଲିଟା ଲିଭିଗଲା, ଅଉ ଟକମକ ଶୁଭିଲା ନାହିଁ । ତା ଦେଖି ସେ ପଣ୍ଡିତ ହସ ହସ ହୋଇ ବୋଇଲା—ଅରେ, ଟକମକ ଶବ୍ଦସ୍ୟ ଠୋ ଶବ୍ଦ ନିବର୍ତ୍ତିକାଃ । ଠୋ ଶବ୍ଦ ଏକା ଟକମକ ଶବ୍ଦକୁ ବନ୍ଦ କରିଦେଲା । ଏମନ୍ତ

ଝଗୃର ଉପରକୁ ମୁହଁ ଟେକି ବସି ରହିଲା । ଯେ ଘିଅ କିଣିବାକୁ ଯାଇଥିଲା, ସେ ଗୋଟିଏ ବେଲାରେ ଅଠଅଣାର ଘିଅ କିଣି ଅସିଲାବେଳକୁ ବାଟରେ ବିଗୃରଲା—"ପାତ୍ରାଧୀନଂ ଘୃତଂ, ଘୃତାଧୀନଂ ପାତ୍ରଂ ।" ଏ ପାତ୍ରର ଅଧୀନ ହୋଇ ଘୃତ ରହିଅଛି କି ଘୃତର ଅଧୀନ ହୋଇ ପାତ୍ର ଅଛି । ଏପରି ବିଗୃର ବିଗୃର କିଛି ନିଷ୍ପତ୍ତି କରି ନ ପାରିବାରୁ ବେଲଟାକୁ ଲେଉଟାଇ ଦେଲା । ଘିଅତକ ତଳେ ପଡ଼ିଗଲା, ବେଲଟା ହାତରେ ଅଛି । ତାହା ଦେଖି ବିଗୃରିଲା, "ଅରେ ପାତ୍ରାଧୀନଂ ଘୃତଂ ।" ଘିଅଗୁଡ଼ାକ ପାତ୍ରର ଅଧୀନ ହୋଇ ରହିଥିଲା । ଏମନ୍ତ ନ୍ୟାୟଶାସ୍ତ୍ର ତଥ୍ୟ ପାଇ ଖାଲି ବେଲଟା ଧରି ଫେରି ଅସିଲା । ଏଣେ ତ ଭାତ ହାଣ୍ଡିଟା ଭାଙ୍ଗି ଯାଇଅଛି । ଅଜି ଖାଇବେ କଣ ? ମୁହଁଟିମାନ ଶୁଖା ଶୁଖା କରି ଉପବାସରେ ସେଠାରୁ ଗୃଲିଗଲେ । ଯାଉ ଯାଉ ବାଟରେ ଗୋଟେ ନଈ ପଡ଼ିଲା, ବର୍ଷାଦିନ ହୋଇଥିବାରୁ ଦାଇରେ ସେ ନଈଟା ବଢ଼ିଥିଲା । ଏ ଗୃର ପଣ୍ଡିତଯାକ କୂଳରେ ଠିଅହୋଇ ଜଣେ ଲୋକଙ୍କୁ ଦେଖି ପଗ୍ଚରିଲେ, ଏ ନଈରେ କେତେ ପାଣି ହେବ ? ସେ କହିଲା; ନଈ ତ ବୁଡ଼ି ପା'ରେ ବଢ଼ିଅଛି, କେତେ ପାଣି ହେବ ତୁମ୍ଭେ ଜାଣି ପାରୁନାହିଁ ଯେ ମୋତେ ପଗ୍ଚରୁଅଛ । ସେ ଲୋକ ଏପରି କହି ତା ବାଟେ ସେ ଗୃଲିଗଲା । ଏ ଗୃର ପଣ୍ଡିତଯାକ ବିଗୃର କଲେ—ମନୁଷ୍ୟଟା ଗୃରିପା, ନଈ ଦୁଇପା ହେଲେ ଅଣ୍ଟେ ପାଣି ହେବ । ଜାଣିଲେ ତ ଅଜ କାହିଁକି କାହାକୁ ପଗ୍ଚରିବା ଗୃଲ ପଶିଯିବା । ଏମନ୍ତ ବିଗୃର କରି ଗାମୁଛା ଖଣ୍ଡେ ଖଣ୍ଡେ ପାଲିଟିଲେ, ଲୁଗାପଟା ପୋଥିପତ୍ର ଓଳେର ବୁଜୁଳାବାନ୍ଧି ମୁଣ୍ଡରେ ଧରି ନଈରେ ପଶିବାକୁ ଧାଡ଼ି ହୋଇ ବାହାରିଲେ । ଅଗରେ ଥିବା ଜଣକ ଗୋଡ଼ ପକାଇ ପଶିଯିବ ବୋଇଲା ବେଳକୁ ଖସି ପଡ଼ିଲା ଯେ ଅଗାଧ ପାଣିରେ ବୁଡ଼ିଗଲା । ମୁଣ୍ଡରୁ ବୁଜୁଳାଟା ନଈ ସୁଅରେ ପଡ଼ି ଭସିଗଲା ।

ମଣିଷଠା ଭଉଁରୀ ଗାଡରେ ପଡ଼ ଭିତରେ ଭିତରେ ଭାସି ଖଣ୍ଡେ ଦୂର ଠାରେ ବାହାରିଲା । କୂଳରେ ଥିବାର ବାକ ତନି ପଣ୍ଡିତଯାକ ଭାସିଗଲା ଭାସିଗଲା କହି କୂଳେ କୂଳେ ଧାଇଁଥାନ୍ତି । କେତେଦୂର ଗଲା ଉତ୍ତାରୁ ଯେଉଁ ମଣିଷଠା ଭାସି ଯାଉଥିଲା ସେ ଭଉଁରୀ ମୋଡ଼ରେ ପଡ଼ କୂଳକୁ ଲାଗିଯିବାରୁ ତନିଜଣ ମଧ୍ୟରୁ ଜଣେ ତାର ଗୋଡ଼ ଦିଟାକୁ ଧରି ପକାଇଲା । ଆର ଜଣେ ବୋଇଲା, ଗୃହିଁଛ କଣ ରେ—"ସର୍ବନାଶ ସମୁତ୍ପନ୍ନେ ଅର୍ଦ୍ଧଂ ତ୍ୟଜନ୍ତି ପଣ୍ଡିତଃ ।" ସବୁନାଶ ହୋଇ ଯାଉଥିଲା ବେଳେ ପଣ୍ଡିତଲୋକ ଅଧେ ଛାଡ଼ି ଅଧେ ରଖି ପକାଇବ । ଏ ତ ସବୁଯାକ ଭାସି ଯାଉଅଛି । ପାଠ ଅନୁସାରେ ଆସ ଆମେ ଅଧେ ରଖି ଅଧେ ଛାଡ଼ିଦେବା । ଏହା ଶୁଣି ଆର ପଣ୍ଡିତ ଜଣକ ହଁ ହଁ ସତ ସତ କହି ଫାରସା ଟେକି ତାର ଅଣ୍ଟାଠାରୁ ହାଣିଦେଲା; ମୁଣ୍ଡଆଡ଼ୁ ଅଧିକ ନଈରେ ଭାସିଗଲା । ଗୋଡ଼ଆଡ଼ୁ ଅଧକ ଏ ତନିଜଣ ଯାକ ଧରି ପଦାକୁ ଟାଣି ଆଣିଲେ । ଜଣେ ବୋଇଲା, ଏତେ କଷ୍ଟରେ ଆଣିଲେ ସିନା ଏ କଣ ଆଉ ବଞ୍ଚିବ କି ? ଆଉ ଦୁଇଜଣ ବୋଇଲେ, ପାଠ ଅନୁସାରେ କାର୍ଯ୍ୟ କଲା ଉତ୍ତାରୁ ନ ବଞ୍ଚିଲେ ଆମେ କଣ କରିବା । ଏମନ୍ତ କହି ଗୋଡ଼ ଦିଟା ସେଠି ଫିଙ୍ଗିଦେଇ ଗୋଟିଏ ଡଙ୍ଗାରେ ସେ ନଈକି ପାରହୋଇ ଗ୍ଭଲିଗଲେ । ଯାଉ ଯାଉ ଦୁଇ ତିନି ଦିନର ବାଟ ଗ୍ଭଲିଲା ପରେ ଗୋଟାଏ ବଣ ପଡ଼ିଲା । ସେ ବଣ ମଝିରେ ଦେଖିଲେ ଯେ ଜଣେ ଲୋକ ଭାଲୁ ଧରିଅଛି । ସେ କିପରି ଭାଲୁ ଧରିଥିଲା ତା ଆଗେ କହୁଅଛି ଶୁଣ ।

ଏକୁଟିଆ ହୋଇ ସେ ଲୋକଟି ସେହିବାଟେ ଯାଉଥିଲା । ଯାଉ ଯାଉ ଗୋଟେ ଭାଲୁ ବର୍ଣ୍ଣଭିତରୁ ବାହାରି ତାକୁ ଆଗୁଳି ଦେଲା । ଭୟରେ ଭାଲୁ ମୁହଁରୁ ପଳାଇ ଯିବ ବୋଲି ବେଳକୁ ପାଖରେ କୁଣ୍ଡେ ମୋଟରେ ଗୋଟେ ଶାଳଗଛ ଥିଲା । ସେ ଗଛ

ପାଖରେ ହୋଇଛୁ, ଭାଲୁ ଦାଉଡ଼ିପାଇ ତାକୁ ଧରି ପକାଇବାକୁ ଗଲା ବେଳକୁ ଗଛଟା ମଝିରେ ରହିଲା । ଭାଲୁ ଦୁଇ ପାଖରୁ ହାତ ବୁଲାଇ ଧରି ପକାଇଲା । ଗଛଟା ମଝିରେ ଅଛି ; ମନୁଷ୍ୟ ଏପାଖେ, ଭାଲୁ ସେ ପାଖେ, ଭାଲୁର ହାତ ଯୋଡ଼ାକୁ ମନୁଷ୍ୟ ଧରିଅଛି । ଦୁହେଁ ସେ ଗଛର ଗୁରିପାଖ ଯାକ ବୁଲୁ ଅଛନ୍ତି । ସେ ମନୁଷ୍ୟ ଅଣ୍ଟାରେ ଦଶ ପନ୍ଦରଟା ଟଙ୍କା ଥିଲା । ଭାଲୁଧରି ବୁଲୁ ବୁଲୁ ସେ ଟଙ୍କାତକ ଗୁରିଆଡ଼େ ବାଞ୍ଛିହୋଇ ପଡ଼ିଅଛି । ଏହି ସମୟରେ ଏ ତିନି ପଣ୍ଡିତଯାକ ଯାଇ ତାକୁ ପଚାରିଲେ—କରେ କାହିଁକି ଏ ଜୀବଟାକୁ ଧରିଅଛୁ ? ସେ ବୋଇଲା ମୁଁ ଏକା ନୋହେ । ମୋପରି କେତେ ଲୋକ ଏ ଭାଲୁକୁ ଧରି ଧରି ଟଙ୍କା ନେଲେଣି । ଦେଖ ଏ ଭାଲୁ କେତେ ଟଙ୍କା ହଗିଛି । ତୁମେ ଜଣେ ଧର, ମୋ ଟଙ୍କାତକ ମୁଁ ଗୋଟେଇ ନେବ ? ଏଣିକି ଅଉ ଯେତେ ଟଙ୍କା ହଗିବ ତୁମେ ନେବ । ଏହା ଶୁଣି ସେ ତିନି ଜଣ ମଧ୍ୟରୁ ଜଣେ ଯାଇ ଭାଲୁର ଦୁଇ ହାତକୁ ଧରିଲା । ପୂର୍ବରୁ ଧରିଥିବା ଲୋକ ତାର ପଡ଼ି ଯାଇଥିବା ଟଙ୍କାତକ ଗୋଟାଗୋଟି କରି ଖଣ୍ଡେ ଦୂର ଯାଇ କହିଲା—'ଗୋସେଇଁ ଭାଲୁକୁ ଭିଡ଼ିକରି ଧରି ଥା । ଛାଡ଼ିଦେବୁ ବୋଇଲେ ଖାଇ ଦେବଟି । ମାତ୍ର ତୁ ଅଉ ଟଙ୍କା ପାଇବୁ ନାହିଁ ।" ଏହା କହି ତା ବାଟେ ବାଟେ ସେ ଚାଲିଗଲା । ଅଉ ଦୁଇଜଣ ତାକୁ ଭାଲୁ ଧରିବାର ଦେଖି ତାକୁ ଛାଡ଼ିଦେଇ ପଳାଇଗଲେ । ଏ ବିଚରା ଭାଲୁ ଧରି ବଣରେ ରହିଲା । ସେ ଦୁଇଜଣ ଯାଇ ଆପଣା ଗ୍ରାମରେ ପହଞ୍ଚିଲେ । ବାଟରେ ଯେଉଁ କଥା ଚଳିଥିଲା, ତାହା ଅଉ କାହାରି ଆଗରେ କହିଲେ ନାହିଁ । କେତେଦିନ ଗଲାପରେ ଦୁଇଜଣରୁ ଜଣଙ୍କର ଶ୍ୱଶୁରଘର କୁଆଁରିକି ତୋଷଣୀ ପିଆ କରିବାକୁ ଡାକ ଆସିଲା ।

ଗଲାବେଳେ ତାର ମାଆ କହିଲା—ଶାଶୁଘର ଯିବୁ ଯେ, ଲୋକହସା କଥା କିଛି କରିବୁ ନାହିଁ । ବଡ଼ଲୋକଙ୍କ ପଣରେ ଗଜରାଜି ହେବୁ, ଉଞ୍ଚ ପିଣ୍ଡାରେ ବସିବୁ, କୋକିଳ ପରି ଭାଷିବୁ ଦେଖ ଗୃହିଁ କରି ଦୁଇ ଚାରିଦିନ ଗଲେ ଫେରି ଆସିବୁ । ମାତାଠାରୁ ଏ କଥା ଶୁଣି ଡାକି ଆସିଥିବା ଲୋକ ସଙ୍ଗେ ଯାଇ ଶ୍ୱଶୁର ଘରେ ପହଞ୍ଚିଲା । ଗଲାବେଳକୁ ବେଳ ବୁଡ଼ି ଆସିଲଣି । ଶାଶୁ ଶ୍ୱଶୁରଙ୍କ ମାନ୍ୟଧର୍ମ କରି ଖିଆପିଆ କଲା ପରେ ରାତିରେ ଶୋଇଲା । ଆର ଦିନ ଖୁବ୍ ସକାଳୁ ଉଠି ମନେ ମନେ ବିଚାରିଲା—ସକାଳ ହେଲେ ଶଙ୍ଖୁଳା ପରସ୍ତ କରିବାକୁ କେତେ ନାଇଁ କେତେ ଲୋକ ଆସିବେ । ମାଆ ତ କହିଛନ୍ତି, ଗଜରାଜି ହେ ଇ ଉଞ୍ଚ ପିଣ୍ଡାରେ ବସି କୋକିଳ ପରି ଭାଷିବାକୁ । ଏବେ କେହି ନ ଆସୁଣୁ ଯାଉଛି ଆଗ ସେହିପରି କରିବି । ଏମନ୍ତ ବିଚାର କରି ଗଜରାଜ ହେବ ବୋଲି ଗୋଟେ ବଡ଼ପଥର ମୁଣ୍ଡେଇଲା । ଶ୍ୱଶୁର ଘର ଆଗ ସାମନାରେ ଗୋଟେ ଗଡଗଦା ଥିଲା, ତାର ଉପରେ ବସି କୋକିଳ ପରି କୁ କୁ ହୋଇ କୁହାଟିଲା । ରାତି ପାହିଯିବାରୁ ଗାଁ ଲୋକେ ଏ କଥା ଦେଖି ପିଲାରୁ ବୁଢ଼ା ପର୍ଯ୍ୟନ୍ତେ ଆସି ସେଠାରେ ଜମା ହୋଇଗଲେ । କେ ବୋଇଲା ପାଗଳାଟେ କେ ବୋଇଲା ଯାକୁ ଭୂତ ଲାଗିଅଛି । ଏପରି କଏ କଣ କହି ହସିବାକୁ ଲାଗିଲେ । ଶ୍ୱଶୁର ଆଉ ଶଳାମାନେ ବଡ଼ ଦୁଃଖିତ ହୋଇ ତା'ର ମୁଣ୍ଡରୁ ପଥରଟା କାଢ଼ିଦେଇ ହାତଧରି ଭିତରକୁ ନେଲେ । ତହିଁପରେ ଗାଧୁଆ ପାଧୁଆ ସାରି ଖିଆପିଆ କଲେ । ସନ୍ଧ୍ୟା ବେଳକୁ ଜୁଆଁଇଁ ପାଇଁ ଜଳଖିଆ ଦିଆହେଲା । ସେହି ସଙ୍ଗେ ଛେନା ପଣା ଡାଲେ ଦେଇଥିଲେ । ଏ ମୂର୍ଖ ପଣ୍ଡିତ ଜଳଖିଆ ଖାଇସାରି ପଣା ପିଇବ ବୋଇଲା ବେଳକୁ, ଦେଖିଲା ଯେ ଛେନା ଭାସୁଅଛି । ଡାଲ ଭିତରେ ହାତ ପୂରାଇ ଛେନାଯାକ ମୁଠାକରି

ଧଇଲା । ମୁଠାଟି ଅଳ୍ପ ତ ନଳରୁ ବାହାରେ ନାହିଁ କି ଏ ଅଳ୍ପ ଛାଡ଼ି ଦିଏ ନାହିଁ । ସେମିତି ହାତଟି ଯୋଡ଼ାଯୋଡ଼ି କରି ବସିଥାଏ । ବସୁ ବସୁ ରାତି ଦଗଡ଼ ହେଲା । ରନ୍ଧାବଢ଼ା ସରିଲା । ଖାଇବାକୁ ଯିବାପାଇଁ ଶଳାମାନେ ଡାକିବାରୁ କିଛି କହେ ନାହିଁ କି ଉଠେ ନାହିଁ, ଚୁପ୍ ହୋଇ ହାତଟି ଯୋଡ଼ାଇ ବସିଥାଏ । ଶ୍ୱଶୁର ଡାକିଲା, ଶାଶୁ ଡାକିଲେ—ହାତ ତ ଚାଳରୁ ବାହାରୁ ନାହିଁ, କେମିତି ଖାଇବ ଯେ କାହିଁକି ଯିବ । କିଛି ନ କହି ସେମିତି ଚୁପହୋଇ ବସି ରହିଲା । ବଂଶଯାକ ଡାକି ଡାକି ଥକା ହେଲେ । ସେ କେବେ ଉଠିଲା ନାହିଁ । ପରଶେଷକୁ ତା ଭାରିଯା ଆସି ଡାକିବାରୁ କହିଲା, ଚାଳରୁ ହାତଟା ବାହାରୁ ନାହିଁ, କେମିତି ଖାଇବାକୁ ଯିବି । ସେ ବୋଇଲା ବାଃ ଭଲ ପଣ୍ଡିତ, ଏମିତି ପାଠ ପଢ଼ିଛ ପରା ! ଛେନାମୁଠାକ ଛାଡ଼ି ଦେଉ ନା ? ଏହା ଶୁଣି ଛେନାମୁଠାକୁ ଛାଡ଼ି ଦେବାରୁ ହାତଟି ବାହାର ହେଲା । ସେଠୁ ଉଠିଯାଇ ଖିଅପିଅ କଲା ।

ଖାଇବସିଲା ବେଳେ ଶଳାମାନେ ଥଟ୍ଟା କରି କଣ ନାଇଁ କଣ କହିଲେ । ଏ ତ ମୂର୍ଖପଣ୍ଡିତ, ଯାକୁ ଥଟ୍ଟାଫଟ୍ଟା କି ଜଣା ? ବଳଦ ଭଳିଆ ପେଟେ ଖାଇ ଉଠିଲା । ଆରଦିନ ସକାଳୁ ଘରକୁ ଯିବି ବୋଲିବାରୁ ଶ୍ୱଶୁର ତାକୁ ଅଠଅଣା ପଇସା ଦେଇ କହିଲେ, ଏହି ପଇସା ଦେଇ ବାଟରେ କି ହେଲେ ଦଶୁ କିଣି ଜଳଖିଆ କରି ଘରକୁ ଯିବ । ଏହା କହି ବିଦା କରିଦେଲେ । ସେ ଆସୁ ଆସୁ ବାଟରେ ଭୋକ ଲାଗିବାରୁ ଗୋଟିଏ ଗାଁକୁ ଯାଇ ପ୍ରତିଘରେ ପଚାରିଲା, ମତେ ଦଶୁ ଅଠଅଣାର ଦେଲ ଜଳଖିଆ କରିବି । ଦଶୁ ବୋଇଲେ ଅବା କି ପଦାର୍ଥ ଯେ କିଏ କଣ ଦେବ ? ସମସ୍ତେ ନାହିଁ ନାହିଁ କଲେ । ପରଶେଷକୁ କେହି ଜଣେ ଖୁଣ୍ଟିଆ ଲୋକ ଥିଲା । ସେ ବୋଇଲା ମୋ ପାଖରେ ଦଶୁ ଅଛି, ମୁଁ ଦେବି । ଏହା

କହୁ ତା'ଠାରୁ ପଇସାତକ ନେଇ ବଣ ଓଲୁ ଅଟେ ଖୋଳିଆଣି ତାକୁ ଧୂଆଧୋଇ କରି କାଟି ତହିଁରୁ ୨୦।୨୫ ଖଣ୍ଡ ନେଇ ଦେଲା । ମୂର୍ଖ ପଣ୍ଡିତ ତାହା ନେଇ ବାଟରେ ଗୋଟିଏ ନଈ କୂଳରେ ବସିଲା । ତାକୁ ତ ବଡ଼ ଭୋକ କରୁଥିଲା । ଟାଉ ଟାଉ କରି ୧୦।୧୨ ଖଣ୍ଡ ଖାଇଦେଲା ବେଳକୁ ତୁଣ୍ଡ ଗଲା କରି ନାଳ ତରଳ ବୋହି ବୋହି ଡୋଟି ନଳଟା ଫୁଲିଗଲା, ଅଉ ପାଣି ଘୁଞ୍ଚା ଗଳିଲା ନାହିଁ, କି କଥା କହି ପାରିଲା ନାହିଁ । ସେ ପ୍ରାଣ ବିକଳରେ ଯାଇ ଘରେ ପହଞ୍ଚିଲା । ଏ ଘଟଣା ଦେଖି ମା ତାର ବଡ଼ ଦୁଃଖିତ ହୋଇ ଦୁଇ ତନଟା ବଇଦ ଅଣି ତାର ସେ ବେମାରି ଭଲ କରାଇଲା । ମୂର୍ଖ ପଣ୍ଡିତମାନଙ୍କର ଏ ସବୁ ଦୁର୍ଘଟଣା ଦେଖି ଦେଖି ସେ ଗ୍ରାମଲୋକେ ଭବିଷ୍ୟତରେ ଅଉ ଏପରି କେହି ନୋହୁ ବୋଲି ସ୍ମୃତିଚିହ୍ନ ରଖିବାକୁ ଶିଳାଲିପି ଖୋଦାଇ ତୁଳସୀ ଚଉରା ବାଡ଼ରେ ସ୍ଥାପନ କରିଅଛନ୍ତି ଯେ ତାହା ଅଦ୍ୟାବଧି ରହିଅଛି । ଆରେ ଅବୋଲକରା ଶୁଣିଲୁ ତ କଥାର ସାର, ପଥ ବାହିଯିବା ଜଠା ଭାର ।

---

## ଚର୍ମବେଶ କଥା

ମୂର୍ଖ ପଣ୍ଡିତ କଥା ଶୁଣି ଅବୋଲକରା ଆନନ୍ଦରେ ଭାର ଧରି ବାହାରିଲା । ସାମନ୍ତ ଅଗେ ଅଗେ ଯାଉଥାନ୍ତି । ଯାଉଁ ଯାଉଁ ଅନେକ ଦୂର ଗଲାପରେ ଗୋଟିଏ ପାର୍ବତ୍ୟ ଦେଶରେ ପହଞ୍ଚିଲେ ବେଳ ଉଚ୍ଚୁର ହେବା ଦେଖି ଗୋଟିଏ ଦେବୀ ମନ୍ଦିର ନିକଟରେ ବସା ପାଉଲେ । ଜାଗାଟି ବଡ଼ ନିର୍ମଳ, ପାଖରେ ଗୋଟିଏ ପୋଖରୀ ଅଛି । ସାମନ୍ତ ବୋଇଲେ—ଅବୋଲକରା, ତୁ ଯା ସଉଦାପତ୍ର କିଣି ଅଣିବୁ । ମୁଁ ସ୍ନାନ ତର୍ପଣ ଆଦି ନିତ୍ୟକର୍ମ ଶେଷ କଲା ବେଳକୁ ସଉଦା ଅଣିଥିଲେ ରୋଷେଇ କରିବା । ଏହା କହି ସେ ସ୍ନାନ କରିବାକୁ ଗଲେ । ଅବୋଲକରା ପଇସା କଉଡ଼ି

ନେଇ ବଜାରକୁ ଗଲା । ତାଙ୍କ ଗୃହକୁ ଫେରିବା ବେଳକୁ ଦେଖିଲା ଯେ, ଗୋଟିଏ ମଣ୍ଡପରେ ଚର୍ମରେ ତିଆର ହୋଇଥିବାର ମନୁଷ୍ୟ ମୂର୍ତ୍ତିଟିଏ ବସିଅଛି । ଅନୁମାନ କଲେ ସେ ନବେ ବର୍ଷର ବୁଢ଼ାପରି ଦେଖା ଯାଉଅଛି । ତାକୁ ରଜାଘର ପ୍ରହରୀମାନେ ଜଗି ଅଛନ୍ତି । ଅନେକ ଦେଶ ବିଦେଶର ଲୋକେ ଦେଖିବାକୁ ଆସୁଅଛନ୍ତି । ତାହା ଦେଖି ଅବୋଲକରା ସେ ପ୍ରହରୀମାନଙ୍କୁ ପଚାରିଲା—ଏ ଚର୍ମ ପ୍ରତିମା କିଏ ବସାଇଛି ? ସେମାନେ କହିଲେ—ଆମ୍ଭେ ତାହା ଜାଣି ନାହୁଁ । କେବଳ ଶୁଣିଅଛୁ ଯେ ଅନେକ କାଳରୁ ଏହା ଏହିପରି ଅଛି, ମାତ୍ର ରଜାଘର ଆକଟ କରି ଜଗାଇ ଅଛନ୍ତି । ଏହା ଶୁଣି ଅବୋଲକରା ଆସି ସାମନ୍ତଙ୍କୁ ପଚାରିଲା—ବାପ ସେ ! ଏ ବଜାର ବାହାର ମଣ୍ଡପରେ ଚର୍ମବେଶ ଗୋଟିଏ କିଏ ବସାଇଅଛି ? ତାକୁ କାହିଁକି ଏ ଦେଶର ରଜାଘର ଲୋକେ ଜଗି ଅଛନ୍ତି ? ସାମନ୍ତ ବୋଇଲେ ଅରେ ଏ ତ ବହୁତ କାଳର କଥା । ତୁ ଯେବେ ପଚାରିଲୁଣି ତା ହେଲେ କହିବା । ଏତେ କହି ସାମନ୍ତ କୋଳେଇ ବସାଇ କହିଲେ—ପକା କମ୍ବଳ ଯୋଡ ଛଡା, ବସ ଅବୋଲକରା ଶୁଣ କଥା । ପୂର୍ବକାଳେ ଏକ ଦେଶରେ ଧରାପାଳ ନାମରେ ଜଣେ ପ୍ରତାପୀ ରାଜା ଥିଲେ । ସେ ରାଜା ବଡ଼ ଦୟାବାନ୍, ନ୍ୟାୟବାନ୍, ଧନବାନ୍ ଓ ବଳବାନ । ତାଙ୍କର ସାତପୁଅ ଓ ସାତଝିଅ ଥିଲେ । ତାଙ୍କର ଶାଗଙ୍କରକାରୀ ବଡ଼ ପ୍ରିୟ । ସେଥିପାଇଁ ଏହି ଗଡ଼ ନିକଟବର୍ତ୍ତୀ ଝିଙ୍ଗିକାପଲ୍ଲୀ ଗ୍ରାମର କାଳୁପଣ୍ଡା ନାମକ ଜଣେ ପନୀପ୍ରିୟ ବ୍ରାହ୍ମଣ ନାନାଦି ପ୍ରକାର ଶାଗ ଆମଦାନି କରି ବାରମାସପାଳି ପ୍ରତିଦିନ ନେଇ ତାଙ୍କୁ ଦେଉଥାଏ । ଏହିପରି ଅନେକ ବର୍ଷ ଗଲାପରେ ଗୋଟିଏ ଭୁତ କାଳିଆ ବଳଦ ରୂପ ହୋଇ ରାତିରେ ଆସି କାଳୁପଣ୍ଡାଙ୍କ

ଶାଗ ପଟାଳିଯାକ ଦଳା ଚକଟା କରି ଖାଇଗଲା । ସେହି କାରଣରୁ ପଣ୍ଡା ଆଉ ଶାଗ ଦେଇ ନ ପାରି ସେ କଥା ରାଜାଙ୍କୁ ଜଣାଇଲେ । ରଜା ତାହା ଶୁଣିବାମାତ୍ରେ କ୍ରୋଧରେ କମ୍ପମାନ ହୋଇ ଦେଶରେ ନାଗରା ଦିଆଇ କହିଲେ ଯେ, ଏଣିକି ରାତରେ ଯେ ଗୋରୁଗାଈ ନ ବାନ୍ଧି ପଦାରେ ଛାଡ଼ିବ ତାକୁ ଶୂଳୀ ଦିଆଯିବ । ଏହା ଶୁଣି ଦେଶବାସୀ ଲୋକେ ଭୀତ ଓ ତ୍ରସ୍ତ ହୋଇ ଯେ ଯାହାର ଗୋରୁମାନଙ୍କୁ ରାତରେ ଆଉ ପଦାକୁ ନ ଛାଡ଼ି ଅତି ଯତ୍ନରେ ବାନ୍ଧି ରଖିଲେ । ତଥାପି ସେ ଭୂତ ସେହିପରି କଲା । କାଳୁପଣ୍ଡେ ରାତଯାକ ଜଗି ଜଗି ତାକୁ ଧରି ପାରନ୍ତି ନାହିଁ । ସକାଳେ ଦେଖିଲା ବେଳକୁ ଶାଗ ପଟାଳିଯାକ ଅସ୍ତବ୍ୟସ୍ତ ହୋଇଥାଏ । ପାଇକ ରାଜତ; ପାତ୍ର ମନ୍ତ୍ରୀ ଏ ସମସ୍ତେ ଯାଇ ଜଗିଲେ, କିନ୍ତୁ କେହି ହେଲେ ସେ କାଳିଆ ବଳଦକୁ ଧରି ପାରିଲେ ନାହିଁ । ପରିଶେଷକୁ ରଜା ଯାଇ ନିଜେ ଜଗିଲେ । ରାତ ଅଧ ହେଲା ସମୟରେ ସେ କାଳିଆ ବଳଦ ଆସି ପୂର୍ବପରି ଶାଗ ପଟାଳିରେ ଚରିଲା । ତାକୁ ଦେଖି ଧରିବା ପାଇଁ ରଜା ଗୋଡ଼ାଇଲେ । ସେ ଆଗେ ଆଗେ ପଳାଇଚାଲି; ରଜା ତାର ପଛ ପଛେ ଧାଉଁଥାନ୍ତି । ଯାଉ ଯାଉ ଘୋର ବଣ ମଝିରେ ପଶିଗଲେ । ସେଠାରେ କାଳିଆ ବଳଦ ଭୂତ ରୂପ ଧରି ରଜାଙ୍କର ତଣ୍ଟି ଚିପି ପ୍ରାଣ ନାଶ କରିଦେଲା । ତହିଁପରେ ସେହି ଭୂତ ରାଜାଙ୍କର ବେଶଭୂଷାଯାକ ପିନ୍ଧି ସେଠାରୁ ଆସି ରଜାଙ୍କର ଭିଅସର ପାଟେଶ୍ୱରୀ ଉପରେ ବସି ରହିଲା । ରାତି ପାହିବାରୁ ପାତ୍ର ମନ୍ତ୍ରୀ ପ୍ରଭୃତି ଲୋକମାନେ ଦେଖିଲେ ଯେ ରଜା ମୂକ ପରି ପାଟେଶ୍ୱରୀ ଉପରେ ବସିଛନ୍ତି । ମନ୍ତ୍ରୀ ତାଙ୍କ ପାଖକୁ ଯାଇ କାହିଁକି ଏପରି ମଉନ ହୋଇ ପାଟେଶ୍ୱରୀ ଉପରେ ବସିଅଛ ବୋଲି ପଚାରିବାରୁ ସେ କିଛି ହେଲେ ଉତ୍ତର ନ ଦେଇ ସେହିପରି ବସି ରହିଲା । ଲୋକେ ଏ କଥା ପଡ଼ିଲେ କହନ୍ତି

ଭୂତପର ବସିଅଛନ୍ତି ବୋଲି । ଏ ତ ସତେ ଭୂତ, ଉତ୍ତର ଦେବ କିଏ ? ସେହିପରି ବସି ରହିଅଛନ୍ତି । ମନ୍ତ୍ରୀ ଅନେକ ପ୍ରକାର କହି କହି ହାଲିଆ ହେଲେ, ରଜା, ଆଉ ଉତ୍ତର ଦେଲେ ନାହିଁ କି ପାଚେରି ଉପରୁ ଓହ୍ଲାଇଲେ ନାହିଁ । ତହୁଁ ମନ୍ତ୍ରୀ ଆସି ଏ ବିଷୟ ତାଙ୍କ ପୁଅମାନଙ୍କୁ ଜଣାଇଲେ । ରାଜପୁତ୍ରମାନେ ତାହା ଶୁଣି ବଡ଼ ଚମତ୍କୃତ ହୋଇ ଯୁବରାଜଠାରୁ ଟିକାପୁତ ପର୍ଯ୍ୟନ୍ତ ଗୋଟି ଗୋଟି ହୋଇ ଆସି ରଜାଙ୍କୁ ଡାକିବାକୁ ଲାଗିଲେ । ତଥାପି ରଜା ତାହା ଶୁଣିଲେ ନାହିଁ କି ସେଠାରୁ ଆସିଲେ ନାହିଁ । ଏହିପରି ଗୁରୁ, ପୁରୋହିତ, ଦଳେଇ, ଦଳବେହେରା ପ୍ରଭୃତି ଯେତେ ଲୋକ ଡାକିଲେ ସେ କାହାର କଥାରେ ଉତ୍ତର ଦେଲେ ନାହିଁ କି ସେଠାରୁ ଆସିଲେ ନାହିଁ । ପରିଶେଷରେ ରାଣୀ ଆସି ଡାକିବାରୁ ରଜା ତାଙ୍କୁ କିଛି ନ କହି ସେଠାରୁ ଓହ୍ଲାଇ ଆସି ତାଙ୍କ ପଛେ ପଛେ ନଅର ଭିତରକୁ ଚାଲିଗଲେ । ସେ ତ ରଜା ନୁହେଁ, ଭୂତଟା ରଜା ବେଶରେ ଆସିଥିଲା । ସେ ଅନ୍ତଃପୁର ଭିତରେ ପଶିବାରୁ ସେ ଭିତରେ ନାନାଦି ଉପଦ୍ରବ କଲା । କାହାକୁ ପିଟିଲା, କାହାକୁ ମାଇଲା, କାହାକୁ ଗାଳି ଦେଲା, ଏପରି କେତେ ନାହିଁ କଣ ଉପଦ୍ରବ କଲା । ଏହା ଦେଖି ରାଜାଙ୍କର ସାନ ପୁଅ ଏବଂ ସାନ ଝିଅ ଉଭୟେ ନଅର ଛାଡ଼ି ପଳାଇଗଲେ । ସେ ରାଜପୁତ୍ରର ନାମ ମନମୋହନ, ସେ ବଡ଼ ସୁନ୍ଦର ଏବଂ ତାର ଦେହରେ ସିଂହପରି ବଳ ଥାଏ । ଝିଅଟିର ନାମ କନକମଞ୍ଜରୀ, ସେ ବଡ଼ ରୂପବତୀ ଏବଂ ଚତୁରୀ ଅଟେ । ଭାଇ ଭଉଣୀ ଦୁହେଁ ଅନ୍ତଃପୁରରୁ ବାହାର ହୋଇ ଚାଲିଗଲେ । ଯାଉଁ ଯାଉଁ ଅନେକ ଗ୍ରାମ, ପାଟଣା, ବନ ପର୍ବତ, ନଈନାଳ ପାର ହୋଇ ଚାଲି ଅଛନ୍ତି । ତାଙ୍କ ମନରେ ଟିକେ ହେଲେ ସୁଖ ନାହିଁ । ଏହି ସମୟରେ ସେ ରାଜପୁତ୍ର ଦେଖିଲା ଯେ ବାଟରେ ଖଣ୍ଡିଏ ଦାଢ଼ିଆ ପଡ଼ିଅଛି । ସେ ଦାଢ଼ିଆ କହିଲା—

ହେ ରାଜକୁମାର, ମୁଁ ତୁମ୍ଭର ନାମ ଏବଂ ବଳ-ପରାକ୍ରମ ଶୁଣିଥିଲି ।
ଏବେ ସାକ୍ଷାତରେ ଦେଖିଲି । ତୁମ୍ଭଙ୍କୁ ଦେଖିବାକୁ ମୋର
ମନରେ ବଡ଼ ସନ୍ତୋଷ ଜାତ ହେଲା । ମାତ୍ର ମୁଁ ତୁମ୍ଭଙ୍କୁ ଗୋଟିଏ
କଥା ମାଗିବି ତାହା ଦେଇ ପାରିବ କି ? ମନମୋହନ ବୋଇଲେ
—ଅଚ୍ଛା, କଣ ମାଗିବ କହ ? ଦଉଡ଼ି କହିଲା—ମୁଁ ଏତିକି
ମାତ୍ର ମାଗୁଅଛି ଯେ ତୁମ୍ଭେ ମୋତେ ସର୍ବଦା ସଙ୍ଗେ ସଙ୍ଗେ
ରଖିଥିବ । ଯାହାକୁ ଯେତେବେଳେ ବାନ୍ଧିବାକୁ ତୁମ୍ଭର ଇଚ୍ଛା
ହେବ ସେତେବେଳେ ମୋତେ ଆଜ୍ଞା ଦେଲେ ସେ ଯେତେ
ଅସାଧ ହୋଇଲେ ସୁଦ୍ଧା ମୁଁ ତାକୁ ବାନ୍ଧି ପକାଇବି; ମାତ୍ର
ପ୍ରତିଦିନ ସକାଳୁ ଥରେ ମୋତେ ଧୋଇ ଦେଉଥିବ ଏବଂ
ସନ୍ଧ୍ୟାବେଳେ ମୋ ନାମରେ ଗୋଟିଏ ଘିଅ ବଳିତା ଜାଳି
ଦେଉଥିବ । ଏହା ଶୁଣି ମନମୋହନ ସେ ଦଉଡ଼ିଟିକୁ ଅତି
ଆଗ୍ରହରେ ନେଲେ । ତା ଉତ୍ତାରୁ ଅଳ୍ପ ଖଣ୍ଡେଦୂର ଯାଇଅଛନ୍ତି,
ବାଟରେ ଗୋଟିଏ ଠେଙ୍ଗା ପଡ଼ିଥିବାର ଦେଖିଲେ । ଠେଙ୍ଗା
ତାଙ୍କୁ ପ୍ରଣାମ କରି କହିଲା—ଆପଣ ଆସିବେ ବୋଲି ପୂର୍ବରୁ
ଜାଣି ମୁଁ ଏଠାରେ ବର୍ଷେ ହେଲା ଜଗିଥିଲି । ଆଜ ଭାଗ୍ୟବଳରୁ
ଭେଟ ହେଲା । ଆପଣ ଦଉଡ଼ିକୁ ଯେପରି ନେଇ ଅଛନ୍ତି, ମୋତେ
ମଧ୍ୟ ସେହିପରି ନିଅନ୍ତୁ । ମୁଁ ଆପଣଙ୍କ ସଙ୍ଗରେ ଥିବି । ଯେତେ-
ବେଳେ ଯାହାକୁ ପିଟ ବୋଲି ଆଜ୍ଞା ଦେବ ସେ ଯେତେ ଅସାଧ
ହୋଇଥିଲେ ସୁଦ୍ଧା ମୁଁ ତାକୁ ପିଟି କରି ଗୁଣ୍ଡାକରି ଦେବି । ଏହା
ଶୁଣି ମନମୋହନ ସେ ଠେଙ୍ଗାକୁ ମଧ୍ୟ ନେଲେ । ସେଠାରୁ ଅଳ୍ପ
କେତେଦୂର ଗଲାପରେ ଦେଖିଲେ ଯେ ବାଟରେ ଗୋଟିଏ ଛୋଟ
ନଳୀ (ପିସ୍ତଲ ବା ବନ୍ଧୁକ) ପଡ଼ିଅଛି । ସେ ନଳୀ କହିଲା—ହେ
ରାଜପୁତ୍ର, ମୋତେ ସାଙ୍ଗରେ ନିଅ । ମୁଁ ତୁମ୍ଭର ବହୁତ ଉପକାର
କରିବି । ମନମୋହନ ବୋଇଲେ—ତୁ ମୋର କି ଉପକାର

କରିବୁ ? ନଳୀ କହିଲା—ତୁମ୍ଭେ ଆଜ୍ଞା ଦେବା ମାତ୍ରେ ମୁଁ ମୁହୂର୍ତ୍ତିକେ ତନ୍ନଶହ ଥର ଫୁଟି ତୁମ୍ଭର ଯେତେ ଶତ୍ରୁ ଥିବେ ତାଙ୍କ କ୍ଷୟ କରି ଦେବି । ଏହା ଶୁଣି ମନମୋହନ ସେ ନଳୀକି ମଧ୍ୟ ସାଙ୍ଗରେ ଧଇଲେ । ଏହିମତ ତିନିଗୋଟି ଦୁର୍ଲ୍ଲଭ ପଦାର୍ଥ ପାଇ ଭାଇ ଭଉଣୀ ଦୁହେଁ ଆନନ୍ଦ ମନରେ ଗ୍ଭଲିଗଲେ । ଯାଉ ଯାଉ ଅନେକ ଦେଶ ପାର ହୋଇ ଗଲା ପରେ ଗୋଟିଏ ନିବିଡ଼ ଅରଣ୍ୟ ପଡ଼ିଲା । ଅରଣ୍ୟର କଥା ଶୁଣିଲେ ଭୟରେ ହୃଦୟ ଥରି ଉଠିବ । ବାଘ, ଭାଲୁ, ବରାହ, ଗଣ୍ଡା, ଗୟଳ, ବଣହାତୀ ପ୍ରଭୃତି ଅନେକ ହିଂସ୍ରଜନ୍ତୁ ପୂରି ଅଛନ୍ତି । ମନୁଷ୍ୟମାନଙ୍କ ସଞ୍ଚାର ନାହିଁ ଅଥବା କେହି ଗଲେ ତାର ଜୀବନର ଆଶା ନ ଥାଏ । ସେ ବଣରେ ଗତାୟାତ କରିବାକୁ ଯେଉଁ ବାଟ ସେ ବଡ଼ ସଂକୀର୍ଣ୍ଣ । ଜଣେ ଚଲେ ଆଉ ଜଣେ ଫେରି ଯିବାକୁ ବାଟ ନାହିଁ । ଦୁଇ ପାଖରେ କୁଅ ପରି ଗମ୍ଭୀର ନାଳ, ମଝିରେ ଯେଉଁ ବାଟ ପଡ଼ିଅଛି ତାହା ହାତେ ଚଉଡ଼ାରୁ ଅଧିକ ନୁହେଁ । ଯାହା ବୋଲନ୍ତି—ମୁଖେ ରାମ, ପାଦେ ଧ୍ୟାନ, ସେ ବାଟ ସେହିପରି ଅଟେ । ମନୁଷ୍ୟ ଦୁଇଜଣ ଯେବେ କଥାବାର୍ତ୍ତା ହୁଅନ୍ତି ତେବେ ସେହି କଥାର ପ୍ରତିଧ୍ୱନି ଉଠି ନିଜ ମନରେ ଭୟ ଜାତ କରାଏ । ପତ୍ରଟେ ପଡ଼ିଲେ ଗୁଲିଟେ ପଡ଼ିଲା ପରି, କାଠ ଖଣ୍ଡେ ପଡ଼ିଲେ ଟିଙ୍କିଟେ ପଡ଼ିଲା ପରି ଶୁଭେ । ଅଗ୍ନାଅଗ୍ନି ବଣ ଭିତରେ ସେ ଭାଇ ଭଉଣୀ ଦୁହେଁ ଯାଉ ଯାଉ ବ୍ରହ୍ମରାକ୍ଷସ ଗୋଟାକୁ ଦେଖିଲେ । ସେ ବ୍ରହ୍ମରାକ୍ଷସ ତାଙ୍କୁ କହିଲା—ତୁମ୍ଭେ ମୋତେ ସାଙ୍ଗରେ ନିଅ । ମନମୋହନ ବୋଇଲେ—ମୁଁ ବଡ଼ ଗରିବ, ମୋର ଘର ନାହିଁ, ଧନ ନାହିଁ, ଦ୍ରବ୍ୟ ନାହିଁ, ସହାୟ ନାହିଁ । ଭିକ୍ଷା ମାଗିଲେ ଆମ୍ଭେ ଭାଇ ଭଉଣୀ ଯୋଡ଼ିକ ଖାଉଅଛୁଁ । ଆପଣ ଦେବତା କି ରାକ୍ଷସ ପରି ଦିଶୁଅଛନ୍ତି । ମୁଁ ଆପଣଙ୍କୁ ନେଇଲେ କଣ ଖାଇବାକୁ ଦେବି, କେଉଁଠାରେ

ରଖିବ । ବ୍ରହ୍ମରାକ୍ଷସ ବୋଇଲା—ତୁମ୍ଭେ ସାମାନ୍ୟ ଲୋକ ନୁହଁ । ମୁଁ ତୁମ୍ଭଙ୍କୁ ଭଲରୂପେ ଜାଣେ । ତେଣୁ କହୁଅଛି ମୋତେ ସାଙ୍ଗରେ ନିଅ । ମୋତେ ଖାଇବାକୁ ଦେବାକୁ ଲୋଡ଼ା ନାହିଁ । ମୋ ସକାଶେ ଘର ଆବଶ୍ୟକ ନାହିଁ, କି ତୁମ୍ଭେ ମୋତେ ବହି ନେବ ନାହିଁ । କେବଳ ତୁମ ଦେହରେ ତିଳ ପ୍ରମାଣରେ ଟିକିଏ ସ୍ଥାନ ମୋତେ ଦେଲେ ମୁଁ ମାଛିରୂପ ଧରି ସେହି ସ୍ଥାନରେ ଥିବି । ସମୟ ପଡ଼ିଲେ ତୁମ୍ଭର ବହୁତ ଉପକାର କରିବି । ତୁମ୍ଭେ ଯେତେବେଳେ ମୋ ନାମ ସ୍ମରଣ କରି ଯାହା କରିବାକୁ ବୋଲିବ, ସେ ଯେତେ ଅସାଧ୍ୟ ହେଲେ ସୁଦ୍ଧା ମୁଁ ସେହିକ୍ଷଣି କରିଦେବି । ଏହା ଶୁଣି ମନମୋହନ ଆନନ୍ଦ ହୋଇ ସେ ବ୍ରହ୍ମରାକ୍ଷସକୁ ନିଜର ଦେହରେ ସ୍ଥାନଦେଇ ନେଇ ଗଲେ । ବ୍ରହ୍ମରାକ୍ଷସମାନେ ତ କାମରୂପୀ, ସେ ତକ୍ଷଣେ ମାଛିରୂପ ହୋଇ ତାଙ୍କ ଦେହରେ ବସିଲା । ସେଠାରୁ ଭାଇ ଭଉଣୀ ଦୁହେଁ ଚାଲିଗଲେ । କେତେଦୂର ଗଲା ପରେ ବଣ ଶେଷ ହୋଇ ମେଲା ମୁକୁଳା ଦେଶ ଦେଖାଗଲା । ଗ୍ରାମପାଟଣା, ପୁରପଲ୍ଲୀ ଲୋକବାକ, ଗାଈଗୋରୁ ପ୍ରଭୃତି ଦେଖି ଗଲେ । ତାହା ଦେଖି ଏ ଦୁହେଁ ଟିକେ ନିର୍ଭୟ ହୋଇ ଖଣ୍ଡେଦୂର ଗଲାପରେ ଦେଖିଲେ ଯେ ଦେବୀ ମନ୍ଦିର, ଫୁଲ ବଗିଚା ପୋଖରୀ ଏହା ସବୁ ଗୋଟିଏ ଜାଗାରେ ଅଛି । ସେହି ପାଖରେ ବାଟୋଇମାନେ ରହିବା ପାଇଁ ଗୋଟିଏ ଧର୍ମଶାଳା ଅଛି । ସେ ସ୍ଥାନଟି ଅତି ମନୋହର ଦେଖି କନକମଞ୍ଜରୀକି ଚାହିଁ ମନମୋହନ କହିଲେ, ଆମ୍ଭେ ଏହିଠାରେ ରହିବା । ଏ ସ୍ଥାନଟି ବଣ ନିକଟ । ମୁଁ ପ୍ରତିଦିନ ବଣକୁ ଯାଇ ଶିକାର କରି ଭଲ ମାଂସ ଆଣୁଥିବି । ତହିଁରୁ କେତେକ ଖାଇବା, ଆଉ କେତେକ ବିକିକଲେ ଅନ୍ୟାନ୍ୟ ଖର୍ଚ୍ଚ ଅନାୟାସରେ ଚଳିଯିବ । ଆଉ ତୁ ଫୁଲହାର ଗୁନ୍ଥି ପ୍ରତିଦିନ ଏହି ଦେବୀଙ୍କି ଦେଲେ ସେ ସନ୍ତୁଷ୍ଟ ହୋଇ ଆମ୍ଭଙ୍କୁ ନିରାପଦରେ ରଖିବେ ।

ଏହାପରେ କଥାବାର୍ତ୍ତା ହୋଇ ଭାଇ ଭଉଣୀ ଦୁହେଁ ସେହି ଧର୍ମଶାଳାରେ ରହିଲେ । ମନମୋହନ ପ୍ରତିଦିନ ବଣରୁ ଶିକାର କରିଆଣି ତହିଁରେ ଜୀବିକା ନିର୍ବାହ କଲେ । କନକମଞ୍ଜରୀ ନାନାବିଧ ପ୍ରକାର ଫୁଲମାଳ ଗୁନ୍ଥି ପ୍ରତିଦିନ ସେହି ଦେବୀଙ୍କି ଦେଉଥାଏ । ସେ ଯେଉଁ ରାଜ୍ୟରେ ରହିଲେ ତାର ନାମ ସୁବର୍ଣ୍ଣପୁର । ସେ ଦେଶର ରାଜାଙ୍କ ନାମ ଚନ୍ଦ୍ରଭାନୁ; ଯୁବରାଜଙ୍କ ନାମ ବିକ୍ରମକେଶରୀ । ବିକ୍ରମକେଶରୀ ସୁନ୍ଦର ଏବଂ ଅତ୍ୟନ୍ତ ବଳବାନ ଅଟନ୍ତି । ଦିନେ ସେ ମୃଗୟା କରିବାପାଇଁ ଗଲାବେଳେ ସେହି ଦେବୀ ମନ୍ଦିର ନିକଟରେ କନକମଞ୍ଜରୀଙ୍କୁ ଦେଖିଲେ । ସେ କନ୍ୟାର ରୂପ ଯୌବନ ଦେଖି ଯୁବରାଜଙ୍କର ମନ ତା'ଉପରେ ଲୁବ୍ଧି ରହିଲା । କିନ୍ତୁ ହଠାତ୍ ତାକୁ କିଛି କହି ନ ପାରି ଗୃହକୁ ଫେରିଗଲେ । ଦିନେ ଓଳିଏ ଗଲାପରେ ଅନୁସନ୍ଧାନ କରି ବୁଝି ପାରିଲେ ଯେ ସେ ସାମାନ୍ୟ ଘରର ଝିଅ ନୁହେଁ, ଜଣେ ରାଜକନ୍ୟା ଅଟେ । ତେଣୁ ସେ ସୁବର୍ଣ୍ଣପୁର ଯୁବରାଜ ଏକାନ୍ତ ସମୟରେ ଯାଇ ସେ କନ୍ୟାକୁ ନିଜର ପରିଚୟ ଦେଇ କହିଲେ, ତୁମ୍ଭେ ଯେବେ ମୋତେ ବିବାହ ହେବ, ତା ହେଲେ ଏ ରାଜ୍ୟରେ ପାଟମହାଦେଈ ହୋଇ ମୋ ସହିତ ରାଜଶ୍ରୀ ଭୋଗ କରିବ । ପୁଣି ତୁମ୍ଭ ଗର୍ଭରୁ ଯେଉଁ ପୁତ୍ର ଜନ୍ମ ହେବ ସେ ଏ ରାଜ୍ୟରେ ଯୁବରାଜ ହେବ । ଏଥିରେ ଯେବେ ମନ ବଳୁଅଛି ତେବେ କପଟ ନ ରଖି ମୋତେ କହି ଦିଅ । କନକମଞ୍ଜରୀ ବୋଇଲା ମୋର ଭାଇ ଅଛନ୍ତି, ମୁଁ ବାପ ମା'ଙ୍କୁ ଛାଡ଼ି ତାଙ୍କର ସଙ୍ଗେ ଆସି ବିଦେଶରେ ରହିଅଛୁ । ସେ ମହା ବୀରପୁରୁଷ, ମନ କଲେ କ୍ଷଣକ ଭିତରେ ତ୍ରିଭୁବନ ଜିଣି ପାରିବେ । ତୁମ୍ଭେ ମୋ ପାଖକୁ ଆସି ଏପରି କହୁଥିଲ ବୋଲି ସେ ଶୁଣିଲେ ତୁମ୍ଭର ରାଜ୍ୟଯାକ ଧ୍ୱଂସ କରି ତୁମ୍ଭର ଜୀବନ ନେଇ ଯିବେ । ଏଣୁ ତାଙ୍କ ଅଜାଣାରେ ଆଉ ଦିନେ ଏଠାକୁ ଆସିବ ନାହିଁ । ଏକା

ଶୁଣି ବିକ୍ରମକେଶରୀ ବୋଇଲେ, ତୁମ୍ଭର ମନ ଯେବେ ମୋଠାରେ ବଳୁଅଛି ତା ହେଲେ ମୁଁ କହିବା ଉପାୟରେ ସେ ଭାଇଙ୍କ ଅଗ ମାରିଦିଅ । ପରେ ମୋତେ ବାହା ହେବ । ଏହା ଶୁଣି କନକ କାନରେ ହାତ ଦେଇ କହିଲା, ନିଜ ଭାଇଙ୍କ ସ୍ୱହସ୍ତରେ ମାରି ଏ ମହାପାପ ମୁଁ ଅର୍ଜିବି କି ? ବିକ୍ରମକେଶରୀ ବୋଇଲେ, ତୁମ୍ଭେ ସ୍ୱହସ୍ତରେ କାହିଁକି ମାରିବ ? ଏହି ଅଗରେ ଯେଉଁ ତନ୍ତୁଳୀ ଗଛ ଦିଶୁଅଛି ତହିଁରେ ଗୋଟେ ଭୂତ ବସ କରି ରହିଅଛି । ସେ ଗଛରେ ଯେ ଚଢ଼ିବ ତାକୁ ସେ ଖାଇ ଦେଉଅଛି । ତୁମ୍ଭର ଭାଇକି ତୁମ୍ଭେ କାଲି ସକାଳୁ ବୋଲିବ, ଏହି ଗଛରୁ ତନ୍ତୁଳୀ ଗୁଡ଼ାଏ ତୋଳି ଅଣ, ମାଂସ ସାକେରା କରିବା । ସେ ତନ୍ତୁଳୀ ତୋଳିବାକୁ ସେ ଗଛରେ ଚଢ଼ିବାମାତ୍ରେ ତାକୁ ବେକମୋଡ଼ି ଭୂତ ଖାଇଦେବ । ସେ ମଲା ପରେ ତୁମ୍ଭର ଅଉ କିଏ କିଏ କଣ ? କନକକୁ ଏ କୁମନ୍ତ୍ରଣା ଦେଇ ସେ ରାଜପୁତ୍ର ଗୁଲିଗଲେ । ନାରୀଜାତି ବଡ଼ ଅବିଶ୍ୱାସୀ— ସେଥିପାଇଁ ବଡ଼ପୁରୁଷେ କହିଅଛନ୍ତି—"ଅଶ୍ୱପ୍ଲୁତଂ ବାରିଦ ଗର୍ଜିନଂ ଚ ସ୍ତ୍ରୀଣାଂ ଚରିତଂ ଭବିତବ୍ୟତା ଚ । ଅବର୍ଷଣଂ ଗୃପ୍ରବର୍ଷଣଂ ଚ ଦେବା ନ ଜାନାନ୍ତି କୁତୋ ମନୁଷ୍ୟାଃ ।" ସ୍ତ୍ରୀମାନଙ୍କ ଚରିତ୍ର ଦେବତାଙ୍କ ଗୋଚର ହୁଏ ନାହିଁ । ମନୁଷ୍ୟମାନେ ଅବା କେତେକର । ବିଶେଷରେ ଯୁବତୀ ସ୍ତ୍ରୀମାନେ ଯୁବାପୁରୁଷକୁ ପାଇଲେ—ବାପ, ମା, ଭାଇ ପ୍ରଭୃତି କାହାରିଠାରେ ଟିକିଏ ରଖନ୍ତି ନାହିଁ । କନକମଞ୍ଜରୀ ବିକ୍ରମକେଶରୀଙ୍କ ପରିଚୟ ପାଇବାରୁ ଭାଇଠାରେ ଥିବା ମମତା ଛାଡ଼ିଦେଇ ଅରଦିନ ମନମୋହନକୁ କହିଲା— ଭାଇ, ଦେଖ ଏ ଗଛରେ କେତେ ତନ୍ତୁଳୀ ପାଚିଅଛି, ଏଥିରୁ ଗୁଡ଼ାଏ ତୋଳି ଅଣନ୍ତ ତୋଇଲେ ମାଂସ ସାକେରା କରିବାକୁ ଭଲ ହୁଅନ୍ତା । ତାହା ଶୁଣି ମନମୋହନ ଯାଇ ଗଛରେ ଚଢ଼ିଲେ । ସେ ଗଛରେ ଭୂତ ଘର କରି ରହିଥିଲା । ସେ ତତ୍‌କ୍ଷଣେ ତାଙ୍କୁ

ଖାଇବା ପାଇଁ ମାଡ଼ିବସିଲା । ମନମୋହନ ତା ହାତରୁ ଫିଟି ନ ପାରି ବ୍ରହ୍ମରାକ୍ଷସକୁ ମନେ ମନେ ଧ୍ୟାନ କଲେ । ସେ ସ୍ମରିବା ମାତ୍ରେ ବ୍ରହ୍ମରାକ୍ଷସ ପବନ ପରି ଧାଇଁ ଆସି ଭୂତକୁ ଧରିଲା । ଭୂତ ମନମୋହନକୁ ଛାଡ଼ ଦେଇ ବ୍ରହ୍ମରାକ୍ଷସକୁ ଧରିଲା ସେ ଦୁହେଁ ଘଣ୍ଟାଏ ପର୍ଯ୍ୟନ୍ତ ଘୋର ଯୁଦ୍ଧ କଲେ । ଶେଷକୁ ଭୂତର ବଳ କମିଯିବାରୁ ବ୍ରହ୍ମରାକ୍ଷସ ତାକୁ ମାରିଦେଇ ପୁଣି ମନ୍ତ୍ର ହୋଇ ଉଡ଼ିଗଲା । ଭୂତ ମରିଯିବାର ଦେଖି ମନମୋହନ ନିର୍ଭୟରେ ସେ ଗଛରେ ଯେତେ ତନ୍ତୁଳୀ ଥିଲା ସବୁପାକ ତୋଳି ତହିଁରୁ ମୁଠିଏ ବାନ୍ଧ ଆଣିଲେ—ଅଉ ସବୁ ସେ ଗଛମୂଳରେ ପଡ଼ି ରହିଲା । କନକ ତନ୍ତୁଳୀ ରସ ଦେଇ ମାଂସ ରାନ୍ଧିଲା, ଦୁହେଁ ଖାଇଲେ । ଆରଦିନ ସକାଳୁ ମନମୋହନ ଶିକାର କରିବା ପାଇଁ ବଣକୁ ଚାଲିଗଲେ । ସେହି ସମୟରେ ବକମକେଶରୀ ଆସି ଦେଖିଲେ ଯେ, ଗଛରେ ତନ୍ତୁଳୀ ଅଉ ଗୋଟିଏ ନାହିଁ । ଭୂତଟା ମରିକରି ଖଣ୍ଡିଆ ପର୍ବତ ପରି ପଡ଼ିଅଛି । ତାହା ଦେଖି ସେ ବଡ଼ ଆଶ୍ଚର୍ଯ୍ୟ ହୋଇ କନକମଞ୍ଜରୀଙ୍କ କହିଲେ—ତୁମ୍ଭେ ଯେପରି କହିଥିଲ ମୁଁ ସାକ୍ଷାତ ଦେଖିଲି ତୁମ୍ଭର ଭାଇ ସେହିପରି ବଳୁଆ । ସେ ଜୀବନରେ ଥିଲେ ମୁଁ ତୁମ୍ଭଙ୍କୁ ନେଇ ପାରିବି ନାହିଁ । ଯେ ଏଡ଼ିବଡ଼ ଭୂତଟାକୁ ମାରିଦେଲା, ତାଙ୍କୁ ମୁଁ ପାରିବି କି ? ମାତ୍ର ମୁଁ କହୁଅଛି ତୁମ୍ଭେ ଅଉ ଗୋଟିଏ ଉପାୟ କର । କନକ ବୋଇଲା—କଣ କରିବି ? ବକମକେଶରୀ କହିଲେ—ପୋଖରୀରେ ଗୋଟେ ବଡ଼ କୁମ୍ଭୀର ଅଛି । ସେ କୁମ୍ଭୀର ଅନେକ ଲୋକଙ୍କୁ ଖାଇ ଦେଲାଣି । ପଦ୍ମଫୁଲ ଆଣିଲେ ମାଳ ଗୁନ୍ଥିକରି ଠାକୁରାଣୀଙ୍କ ଦେବି ବୋଲି ତୁମ୍ଭେ କହିବ ବୋଇଲେ ସେ ପଦ୍ମଫୁଲ ତୋଳିବାକୁ ଯିବ । ପାଣିରେ ପଶିବା ମାତ୍ରେ ତାକୁ ନିଶ୍ଚେ କୁମ୍ଭୀର ଗିଳି ଦେବ । ଏପରି ଉପାୟ କହି ଦେଇ ସେ ଚାଲିଗଲେ । ସେ ଗଲାପରେ ମନମୋହନ

ମାଂସ ଧରି ବଣରୁ ଆସିଲେ । କନକ ରାନ୍ଧିଲା, ଦୁହେଁ ଖାଇଲେ । ଆଉ ଦିନ ସକାଳୁ କନକ ବୋଇଲା—ଭାଇ ଦେଖ, ଏ ପୋଖରୀରେ କେତେ ପଦ୍ମଫୁଲ ଫୁଟିଅଛି । ଏଥିରୁ ଗୁଡ଼ାଏ ତୋଳି ଆଣନ୍ତ ବୋଇଲେ ମାଳଗୁନ୍ଥି ଦିଅନ୍ତି ଦିଅନ୍ତେ । ତାହା ଶୁଣି ମନମୋହନ ହେଜି କହି ପଦ୍ମଫୁଲ ତୋଳିବାକୁ ସେ ପୋଖରୀରେ ପଶିଲେ । ସେ ଯେମିତ ପଶିଲେ, କୁମ୍ଭୀର ସେମିତ ଧାଇଁଆସି ଗିଳିଦେବ ବୋଲି ତାଙ୍କର ଗୋଡ଼ ଯୋଡ଼ିକୁ ଭିଡ଼ି ଧଇଲା । ମନମୋହନ ତାହା ଜାଣିପାରି ମନେ ମନେ ଦଉଡ଼ିକୁ ସୁମରଣା କଲେ । ଦଉଡ଼ି ତକ୍ଷଣେ ଦୌଡ଼ିଆସି ସାପ ପରି ପାଣି ଭିତରେ ବୁଡ଼ି କୁମ୍ଭୀରଟିକୁ ଚଉକାଟିଆ କରି ବାନ୍ଧି ପକାଇଲା ଯେ, ତାର ଅଉ କର ଚରଣ ଚଳିଲା ନାହିଁ । ତହିଁ ପରେ ମନମୋହନ ଠେଙ୍ଗାକୁ ସୁମରଣା କରିବାରୁ ସେ ଠେଙ୍ଗା ଭୀମଙ୍କ ଗଦା ପରି ଉପରମୁଣ୍ଡ ଧରି କୁମ୍ଭୀରକୁ ଘନ ଘନ ପ୍ରହାର କଲା । କୁମ୍ଭୀରର ଚମଡ଼ା ବଡ଼ ଟାଣ, ତହିଁରେ ଠେଙ୍ଗାମାଡ଼ ଯେତେ ବାଜିଲେ ସୁଦ୍ଧା ସେ ନ ମରିବାରୁ ମନମୋହନ ମନେ ମନେ ନଳୀକୁ ସୁମରଣା କଲେ । ନଳୀ ତତ୍ସଣେ ଧାଇଁଆସି ଫିଟିଲା ଯେ, ଏକା ଚୋଟକେ କୁମ୍ଭୀରଟା ମରିଗଲା । ଦଉଡ଼ି, ଠେଙ୍ଗା ଓ ନଳୀ ଏମାନେ ଯେ ଯାହାର ସ୍ଥାନକୁ ଗ୍ଭଲିଗଲେ । ମନମୋହନ ମନ ଇଚ୍ଛାରେ ପଦ୍ମଫୁଲ ତୋଳିଆଣି କନକକୁ ଦେଲେ । ବ୍ରହ୍ମରାକ୍ଷସ କୁମ୍ଭୀରର ମୃତ ପିଣ୍ଡଟାକୁ ଅଣି କୂଳରେ ଫିଙ୍ଗିଦେଲା । ଏହାପରି ସେଦିନକ ଗଲା । ଆଉଦିନ ମନମୋହନ ଶିକାର କରିବାକୁ ବଣକୁ ଯାଇ ଅଛନ୍ତି, ସେହି ସମୟରେ ବ୍ରହ୍ମରାକ୍ଷସ ଆସି ଦେଖିଲେ ଯେ, କୁମ୍ଭୀରଟି ମରି ପଦାରେ ପଡ଼ିଅଛି । ତାହା ଦେଖି ସେ ବଡ଼ ଅଶ୍ଚର୍ଯ୍ୟ ହୋଇ କନକ ପାଖକୁ ଯାଇ ତାକୁ କହିଲେ, ତୁମ୍ଭର ଭାଇଙ୍କି କୌଣସି ଉପାୟରେ ମାରି ହେବ ନାହିଁ । ତୁମ୍ଭେ ଏତେବେଳେ

ମୋ ସଙ୍ଗରେ ଚାଲିଆସ । ମୁଁ ନେଇ ତୁମ୍ଭଙ୍କୁ ଯେଉଁ ସ୍ଥାନରେ ରଖିବି ସେ ଜାଣିପାରିବ ନାହିଁ । ଅଥବା ଜାଣିଲେ ମଧ୍ୟ ସେଠାକୁ ଯାଇ ପାରିବ ନାହିଁ । ସୁନ୍ଦର ପୁରୁଷ ଦେଖି କନକର ମନ ଛ ଛନଛନ ହେଉଥିଲା । ସେ ଭାଇଠାରୁ ଭସ୍ମ ଅଙ୍ଗ ଓପ୍ରୋଧ ଛାଡ଼ି ବିକ୍ରମକେଶରୀଙ୍କ ସଙ୍ଗେ ଚାଲିଗଲା । ଏଥିପାଇଁ ବଡ଼ ପୁରୁଷେ କହିଛନ୍ତି—ସ୍ଥାନଂ ନାସ୍ତି କ୍ଷଣଂ ନାସ୍ତି ନାସ୍ତି ପ୍ରାର୍ଥୟିତା ନରଃ । ନାସ୍ତି ସ୍ୱାଧୀନତା ସ୍ତ୍ରୀଣାଂ ସତୀତ୍ୱମୁପଜାୟତେ । ସ୍ଥାନ ନ ଥିବ, ସମୟ ନ ଥିବ, ପ୍ରାର୍ଥନା କରିବା ପୁରୁଷ ନ ଥିବ, ସ୍ୱାଧୀନତା ନ ଥିବ ବୋଲିଲେ ସ୍ତ୍ରୀମାନଙ୍କର ସତୀତ୍ୱ ରହେ, ନୋହିଲେ ରହି ପାରେ ନାହିଁ । ଅନ୍ୟର ମଧ୍ୟ କହିଅଛନ୍ତି—ଘୃତକୁମ୍ଭ ସମା ନାରୀ ତପ୍ତାଙ୍ଗାର ସମଃ ପୁମାନ୍ । ତସ୍ମାଦ୍ ଘୃତଂ ଚ ବହ୍ନିଂ ଚ ନୈକତ୍ର ସ୍ଥାପୟେଦ୍ ବୁଧଃ । କନକମଞ୍ଜରୀ ପକ୍ଷେ ଏସବୁ ଅଟକ ନ ଥିବାରୁ ସେ ଯୁବାପୁରୁଷକୁ ଦେଖି ତା ସଙ୍ଗେ ଚାଲିଗଲା । ବିକ୍ରମକେଶରୀ ସେ କନ୍ୟା ସହିତ ଗନ୍ଧର୍ବମତରେ ବିଭାହୋଇ ତାକୁ ରାଣୀ କରି ଅନ୍ତଃପୁର ଭିତରେ ରଖିଲେ । ଏଣେ ମନମୋହନ ଶିକାର ଧରି ବଣରୁ ଫେରିଆସି ଦେଖିଲେ ଯେ ବସାରେ କନକମଞ୍ଜରୀ ନାହିଁ । ତେଣୁ ସେ ଅସ୍ତବ୍ୟସ୍ତ ହୋଇ ଚାରିଆଡ଼େ ଖୋଜି ଖୋଜି ପାଇଲେ ନାହିଁ । ତହିଁପରେ ବ୍ରହ୍ମରାକ୍ଷସକୁ ଡାକି ତାକୁ ଏ କଥା ପଚାରିଲେ । ସେ ମୂଳରୁ ଶେଷଯାଏ ଯାହା ଘଟିଥିଲା ସବୁ କହିଗଲା । ତାହା ଶୁଣି ମନମୋହନ ବଡ଼ ଦୁଃଖିତ ହୋଇ ବ୍ରହ୍ମରାକ୍ଷସକୁ ବୋଇଲେ, ତୁମ୍ଭେ ମୋ ପକାଶେ ଅଶୀବର୍ଷିଆ ବୁଢ଼ାର ବେଶ ଗୋଟିଏ ଚମଡ଼ାରେ ନିର୍ମାଣ କରି ଆଣିଦିଅ । ତାହାଶୁଣି ବ୍ରହ୍ମରାକ୍ଷସ ସେ କହିବା ପ୍ରକାରେ ଚର୍ମବେଶ ଗୋଟିଏ ତିଆରି କରି ଆଣିଦେଲା । ମନମୋହନ ସେ ବୃଦ୍ଧ ବେଶଟିକୁ ଦେଖି ମନେ ମନେ ବିଚାରି କଲେ, କନକ ତାର ସ୍ୱ-ଇଚ୍ଛାରେ ଏ ଦେଶର ରାଜକୁମାରକୁ

ବରଣ କର ଯେବେ ତା ସଙ୍ଗରେ ଚାଲିଗଲଣି ତେବେ ମୁଁ ଯୁଦ୍ଧକରି ତହିଁରେ ବାଧା ଦେଲେ ଅଉ କି ପ୍ରୟୋଜନ ହେବ ? ସେ କଥା ଥାଉ, ପରେ ବୁଝିବି । ଅଗ ଯାଉଛୁ ମୋର ନିଜ କାର୍ଯ୍ୟ ମୁଁ ଦେଖିବି । ଏମନ୍ତ ବିଚାର କରି ସେ ଚର୍ମବେଶଟିକୁ ନିଜେ ପିନ୍ଧିଲେ । ଦଣ୍ଡ, ଠେଙ୍ଗା, ନଳୀ ଏବଂ ବ୍ରହ୍ମରାକ୍ଷସ ଏହି ଗୃବେଟି ଜିନିଷ ସଙ୍ଗରେ ନେଇ ସେଠାବରୁ ଚାଲି ମହାରାଷ୍ଟ୍ର ଦେଶରେ ପହଞ୍ଚିଲେ । ସେ ଦେଶର ଜଣେ ବୃଦ୍ଧକୁମ୍ଭାର ହାଣ୍ଡି ଗଢୁଥିଲା । ତା ପାଖକୁ ଯାଇ ତାକୁ କହିଲେ—ମୁଁ ବୁଢ଼ାକୁ ତୁମ୍ଭେ ବୁଢ଼ା, ତୁମ୍ଭର ଏହି ଶାଳଘରେ ମୋତେ ଟିକିଏ ସ୍ଥାନ ଦେବ ବୋଇଲେ ମୁଁ ଭିକ୍ଷାପାନ କରି ଖାଇବି । ସମୟେ ସମୟେ ତୁମ୍ଭର ହାଣ୍ଡିଗୁଡ଼ିକ ଶୁଖାଇ ଦେଉଥିବି । ରାତିବେଳେ ଅମ୍ଭେ ଦୁଇ ବୁଢ଼ା ବସି ଦୁଃଖସୁଖ କଥାବାର୍ତ୍ତା ହେଉଥିବା । ଏହା ଶୁଣି କୁମ୍ଭାର ବୁଢ଼ା ତାଙ୍କ ରହିବା ପାଇଁ ସ୍ଥାନ ଟିକିଏ ଦେଲା । ବୃଦ୍ଧବେଶଧାରୀ ମନମୋହନ ସେଠାରେ ରହି ସେ ଦେଶର ହାଲଚାଲ ବୁଝୁଥାନ୍ତି । ରାତିବେଳେ ସେ ଦୁଇବୁଢ଼ା ଏବଂ ଆହୁରି ଅନ୍ୟାନ୍ୟ କେତେକ ବ୍ୟକ୍ତି ବସି ନାନା କଥାବାର୍ତ୍ତା ହୁଅନ୍ତି । ଏହିପରି କେତେଦିନ ଚାଲିଗଲା ପରେ ଦଇବର ଘଟଣା ଦେଖ ଯେ ସେ ଦେଶ ରାଜାଙ୍କ ନାମ ବ୍ରଜେନ୍ଦ୍ର ସିଂହ । ତାଙ୍କର ସାତଗୋଟି କନ୍ୟା ଥାନ୍ତି । ସେ କନ୍ୟାଗୁଡ଼ିକ ବଡ଼ ସୁନ୍ଦରୀ, ସବା ସାନଟିର ନାମ ସରୋଜିନୀ । ଦିନେ ଅନ୍ତଃପୁର ଭିତରେ ରାଜା ସେ କନ୍ୟାମାନଙ୍କୁ ଏବଂ ରାଣୀଙ୍କୁ ବସାଇ ପଚାରିଲେ—ତୁମ୍ଭେମାନେ କାହା କର୍ମରେ ରାଜଶିରୀ ଭୋଗ କରୁଅଛ ? ତାହା ଶୁଣି ରାଣୀ ଅଉ ବଡ଼ ଛଅ କନ୍ୟା କହିଲେ—ଅମ୍ଭେମାନେ ତୁମର କର୍ମରେ ଏ ସମ୍ପଦ ଭୋଗ କରୁଅଛୁଁ । ସରୋଜିନୀ କହିଲା—ତା ନୁହେ, ଏ ସଂସାର ମଧ୍ୟରେ କେହି କାହାର କର୍ମ ଭୋଗ କରୁନାହିଁ । ସମସ୍ତେ ନିଜ ନିଜ

କର୍ମଫଳ ଭୋଗକର ସମୟ ଯାପନ କରୁଅଛନ୍ତି । ତୁମ୍ଭେମାନେ ଯାହା କହିଲ ସେ ସବୁ ମନ ଧରିବା କଥା । ମୁଁ କହୁଅଛି ଯେ ମୋ ନିଜର କର୍ମ ମୁଁ ଭୋଗ କରୁଅଛି । ଏହା ଶୁଣି ରାଜା ମନେ ମନେ ରାଗି ଯାଇ ସେଠାରୁ ଉଠିଗଲେ । ଅରନ୍ଧନ ସଙ୍କ୍ରାନ୍ତି ମନ୍ତ୍ରୀଙ୍କି ବୋଇଲେ ତୁମ୍ଭେ ଖୋଜ ଖୋଜି ୮୦।୯୦ ବର୍ଷର ଗୋଟିଏ ବୁଢ଼ା ପୁରୁଷ ଆଣ । ମନ୍ତ୍ରୀ ବୋଇଲା—ଏପରି ବୁଢ଼ାଟେ କଣ ଦରକାର ପଡ଼ିଲା କି ? ରାଜା ବୋଇଲେ, ମୋର ସାନ ଝିଅକୁ ସେହି ବୁଢ଼ା ସହିତ ବାହା କରାଇ ଦେବି । ମନ୍ତ୍ରୀ କାନରେ ହାତଦେଇ କହିଲା, ମହାରାଜ ! ଏପରି ଦୁର୍ବିଗ୍ଭର କାହିଁକି କରୁଅଛନ୍ତି ? ରାଜା ବୋଇଲେ—ଏଥିରେ ତୁମ୍ଭେ ଆଉ କିଛି କହ ନାହିଁ । ମୋ ଆଜ୍ଞା ପାଳନ କର ଗୋଟିଏ ବୁଢ଼ା ଖୋଜିଆଣ । ମନ୍ତ୍ରୀ ଯେ ଆଜ୍ଞା କହି ପାଇକ ଗୁଡ଼ା ପାଞ୍ଚଜଣ ସାଙ୍ଗରେ ନେଇ ବୁଢ଼ା ଖୋଜିବାକୁ ଗଲା । ଅନେକ ଆଡ଼େ ଖୋଜ ଖୋଜି କେଉଁଠାରେ ହେଲେ ସେପରି ବୁଢ଼ା ପାଇଲା ନାହିଁ । ସବୁଶେଷରେ ହତାଶ ହୋଇ ଫେରିଆସିଲା ବେଳକୁ କୁମ୍ଭାର ଶାଳରେ ବୃଦ୍ଧବେଶଧାରୀ ମନମୋହନଙ୍କୁ ଦେଖିଲା । ଦାନ୍ତସବୁ ସବୁ ପଡ଼ିଗଲାଣି, ମୁଣ୍ଡବାଳ ଝୋଟପରି ଦିଶୁଅଛି; ଦେହର ଚମଯାକ ଲେଗ୍ଭ ଲେଗ୍ଭ ହୋଇ ଗଣ୍ଠିଯାକ ପଦାକୁ ଦିଶୁଅଛି । କଥା ପଦେ କହିଲେ ପାଟିରୁ ନାଳ ବହିପଡ଼ି ବାକ୍ୟ ଉଚ୍ଚାରଣ ହେଉ ନାହିଁ । ଉଠିବାକୁ ହେଲେ ବାଡ଼ିଖଣ୍ଡେ ନ ଧରିଲେ ଉଠି ପାରୁନାହିଁ, ଆଖିକି ମଧ୍ୟ ଦିଶୁନାହିଁ । ସେପରି ବୁଢ଼ା ଜଣେ କୁମ୍ଭାର ଶାଳରେ ବସିଥିବାର ଦେଖି ମନ୍ତ୍ରୀ ମନେ ବିଗ୍ଭର କଲା, ଯେଉଁପରି ରାଜା ଆଦେଶ ଦେଇଥିଲେ ଆଜି ସେପରି ବୁଢ଼ା ପାଇଲି । ଏହାକୁ ନେଇ ରାଜାଙ୍କୁ ଦେଲେ ମୁଁ ରକ୍ଷା ପାଇଯିବି; ମାତ୍ର ସର୍ବୋତ୍କୃଷ୍ଟ କପାଳ କେଡ଼େ ମନ୍ଦ ଯେ-ରାଜକନ୍ୟା ହୋଇ ଏ ପାଚିଲା ବୁଢ଼ାଟାକୁ

କାଣ୍ଡ ହୋଇ ଜୀବନ ରକ୍ଷିବ । ହାୟରେ ବିଧାତା ! ତୁ ଏତେ ମନ୍ଦକୃତ୍ୟ କଲୁ ? ରଜାଙ୍କୁ ଏ ଦୁର୍ବୁଦ୍ଧି କିଏ ଦେଲା ? ମୁଁ ଯାହା ଏହାକୁ ଖୋଜନେବାପାଇଁ ଆସିଲି; ମୋତେ ଧିକ୍‌କାର ହେଉ । ଏପରି ଅନେକ ବ୍ୟାକୁଳ ହୋଇ ତହିଁ ପରେ ସେ ବୁଢ଼ା ପାଖକୁ ଯାଇ କହିଲା, ତୁମ୍ଭଙ୍କୁ ଅମ୍ଭ ରାଜାଙ୍କର ଡାକରା ହୋଇଅଛି; ଚାଲି ଯିବ । ଏହା କହି ସେ କପଟ ବେଶଧାରୀ ବୁଢ଼ାକୁ ଶୁଆରରେ ବସାଇ ବହିନେଲେ । ରାଜା ଲଡ଼ଲଡ଼ିଆ ବୁଢ଼ାକୁ ଦେଖି ଭାରି ଆନନ୍ଦ ହୋଇ ବସାଦେଇ ରଖାଇଲେ । ସେତିକି ବେଳେ ମନ୍ତ୍ରୀ ରାଜାଙ୍କୁ ପଚାରିଲା—ମହାରାଜ ! ଆପଣ ଏ ଅନ୍ୟାୟ କାହିଁକି କରୁଅଛନ୍ତି ? ରାଜା ବୋଇଲେ—ସର୍ବେଜଜମା ମୋତେ କଥାରେ ଅପମାନ ଦେଇ ଗର୍ବ କରି 'ମୋ କର୍ମ ମୁଁ ଭୋଗ କରୁଅଛି' ବୋଲି କହିବାରୁ ମୁଁ ତାକୁ ଏ ବୁଢ଼ା ସହିତ ବାହା କରାଇ ଦେବି । ପରଶେଷରେ ଦେଖିବା ଯେ ତାର କର୍ମ ସେ କିପରି ଭୋଗ କରିବ ? ଏହା ଶୁଣି ମନ୍ତ୍ରୀ ଆଉ କିଛି ନ କହି ଚାଲିଗଲା । ଆରଦିନ ରାଜା ସେ ବୁଢ଼ା ସହିତ ସର୍ବେଜଜମାକୁ ବିଭା କରାଇ ଦେଲେ । ଚଉଠି ଗଲାପରେ ବରକନ୍ୟା ଦୁହିଙ୍କୁ ଉଆସରୁ ବାହାର କରି ବିଦା କରିଦେଲେ । ଏହା ଦେଖି ରାଣୀ ଆଉ ପୁର ସ୍ତ୍ରୀଗଣ କାନ୍ଦି କାନ୍ଦି ଲୋତକଧାରାରେ ପୃଥିବୀରେ ବଢ଼ି ମଡ଼ାଇ ଦେଲେ । ତଥାପି ସର୍ବେଜଜମା ବିଚଳିତ ନ ହୋଇ ସେମାନଙ୍କୁ 'ମୋ ସକାଶେ କାନ୍ଦ ନାହିଁ' ବୋଲି କହି ଏବଂ ନିଜର କର୍ମକୁ ଆଦରି ସେହି ବୃଦ୍ଧ ପତି ସଙ୍ଗେ ଆନନ୍ଦ ମନରେ ଚାଲିଗଲା । ସେହି ଦେଶର ଗୋଟିଏ ପଲ୍ଲୀ ଗ୍ରାମରେ ପତି ପତ୍ନୀ ଦୁହେଁ ଖଣ୍ଡିଏ ବସାଘର କରି ରହିଲେ । ତାଙ୍କ ପଡ଼ଶା ଘରେ ଗୋଟିଏ ମାଳିଘର ଥାଏ । ତାର ଦିଅଁ ସେବା ଥାଏ ଯେ ସେ ତହିଁରୁ ପ୍ରତିଦିନ ଭୋଗ ପାଇ ଏ ଦୁହିଙ୍କୁ ଭୋଗରୁ କିଛି ଖାଇବାକୁ ଦିଏ । ଏ

ଦୁହେଁ ସେଥିକିରେ ସନ୍ତୁଷ୍ଟ ହୋଇ ରହିଥାନ୍ତି । ସର୍ବେଜନୀ ପ୍ରତିଦିନ ପ୍ରାଣପଣେ ଲାଗି ହରଷ ମନରେ ସେହି ବୃଦ୍ଧପତିର ସେବାକରି କାଳ କାଟୁଥାଏ । ଏହିପରି କେତେଦିନ ଗଲାପରେ ରଜାଘର ବାର୍ଷିକ ଉତ୍ସବ ହେଲା ଯେ, ସେ ଉତ୍ସବ ଦେଖିବା ପାଇଁ ସବୁ ଗ୍ରାମର ଲୋକେ ଧାଇଁଲେ । ତାହା ଜାଣି ସର୍ବେଜନୀ ଉତ୍ସବ ଦେଖିବାକୁ ଯିବି ବୋଲି ନିଜର ପତିଙ୍କି କହିଲା । ସେ କପଟ ବେଶଧାରୀ ବୃଦ୍ଧ ଭାର୍ଯ୍ୟାର ସ୍ନେହରେ ଅବଦ୍ଧ ହୋଇ 'ହେଉ ତେବେ ଯାଅ' ବୋଲି କହିବାରୁ ସର୍ବେଜନୀ ତାଙ୍କର ସେବାକାର୍ଯ୍ୟ ବଢ଼ାଇ ସାରି ପଡ଼ୋଶୀ ମାଇପିଙ୍କ ସଙ୍ଗେ ସାଥିହୋଇ ଯାତ୍ରା ଦେଖିବାକୁ ଗଲା । ସର୍ବେଜନୀ ଘରୁ ଯିବାର କିଛିକ୍ଷଣପରେ ମନମୋହନ ଚର୍ମବେଶଟି ବାହାର କରି ଯତ୍ନରେ ରଖିଦେଲେ । ନିଜର ପୂର୍ବବେଶରେ ଅଲଙ୍କୃତ ହୋଇ ସେ ମଧ୍ୟ ଯାତ୍ରା ଦେଖିବା ପାଇଁ ରଜାଘରକୁ ଗଲେ । ଗଲାବେଳେ ବ୍ରହ୍ମରାକ୍ଷସକୁ ଡାକି କହିଲେ—ତୁମ୍ଭେ ଅଦୃଶ୍ୟରେ ଥାଇ ସର୍ବେଜନୀର ପଛେ ପଛେ ରହିଥିବ । ସେ କାର୍ଯ୍ୟପଦରେ ଯାତ୍ରା ଦେଖି ଯେପରି ଫେରି ଆସେ । ଏହା ଶୁଣି ସେ ସର୍ବେଜନୀକୁ ଜଗିବାକୁ ଗଲା । ପୁଣି ମନମୋହନ ଠେଙ୍ଗାକୁ ଡାକି କହିଲେ, ତୁ ଘର ଜଗିଥା, ମୁଁ ଯାଉଅଛୁ ଯାତ୍ରା ଦେଖି ଆସିବି । ପୁଣି ମନମୋହନ ଦଉଡ଼ିଙ୍କି ବୋଇଲେ, ମୋର ଘୋଡ଼ାକୁ ବାନ୍ଧି ଆଣେ । ଆଜ୍ଞା ମାତ୍ରେ ଦଉଡ଼ି ଯାଇ ଘୋଡ଼ାକୁ ବାନ୍ଧି ଆଣିଦେଲା । ଠେଙ୍ଗା ଘର ଜଗିଲା । ମନମୋହନ ଘୋଡ଼ାରେ ବସି ଯାତ୍ରା ଦେଖିବାକୁ ଗଲେ । ଘଡ଼ିଏ ପ୍ରହରେ ଦେଖି ତାହା ଶେଷ ନ ହେଉଣୁ ଫେରିଆସି ପୁଣି ବୃଦ୍ଧବେଶ ଧରି ବସାରେ ରହିଲେ । ଠେଙ୍ଗା, ଦଉଡ଼ି, ଘୋଡ଼ା ଏମାନେ ଯେ ଯାହାର ସ୍ଥାନକୁ ଗୁଲିଗଲେ । ଠିକ ଏ ଗଲାଉତ୍ତାରୁ ସର୍ବେଜନୀ ଆସି ବସାରେ ମିଳିଲା । ପତି ପତ୍ନୀ ଦୁହେଁ ପୂର୍ବପରି

ସେ ରାତକ କଟାଇଲେ । ଆରଦିନ ସକାଳୁ ପଡ଼ଶାଘରର ମାଲୁଣୀ ସରୋଜନୀକି ଦେଖି ଆନନ୍ଦରେ ହସି ହସି କହିଲା—ତୋ ପରି ଭାଗ୍ୟବତୀ ସଂସାରରେ କିଏ ନାହିଁ । ତୁ ଯେଉଁ ପତି ପାଇଅଛୁ, ନାରୀମାନେ କୋଟି ଜନ୍ମରେ ତପସ୍ୟା କଲେ ସୁଦ୍ଧା ସେପରି ପତି ପାଇବେ ନାହିଁ । ସରୋଜନୀ ବେଇଲା ରୂପ ଦେଖି କ୍ଷୁଦ୍ର ପରିହାସ କରୁଅଛୁ କି ? ତୁମ୍ଭେ ଯେତେ ଥଟ୍ଟା କହିଲେ ମଧ୍ୟ ମୁଁ କଣ ସେ ବୃଦ୍ଧପତିଙ୍କି ଦେବତା ବୋଲି ନ ମାନିବି କି ? ଶାସ୍ତ୍ର ତ ଲେଖିଅଛି—ଗୁରୁରଗ୍ନି ଦ୍ୱିଜାତୀନାଂ ବର୍ଣ୍ଣାନାଂ ବ୍ରାହ୍ମଣୋ ଗୁରୁଃ । ପତିରେକୋ ଗୁରୁଃ ସ୍ତ୍ରୀଣାଂ ସର୍ବସ୍ୟାଭ୍ୟାଗତୋ ଗୁରୁଃ । ଅଗ୍ନି ବ୍ରାହ୍ମଣମାନଙ୍କର ଗୁରୁ, ସବୁ ବର୍ଣ୍ଣମାନଙ୍କର ବ୍ରାହ୍ମଣ ଗୁରୁ । ସ୍ତ୍ରୀମାନଙ୍କର ଏକମାତ୍ର ପତି ଗୁରୁ ଏବଂ ଅତିଥି ଏ ସମସ୍ତଙ୍କର ଗୁରୁ ଅଟନ୍ତି । ଏହା କାରଣରୁ ତୁମ୍ଭେ ଯିଏ ଯାହା ବୋଲୁଥାଅ ପଛେ ମୋର ସେହି ବୃଦ୍ଧପତି ଏକା ସର୍ବସ୍ୱ ବୋଲି ମୁଁ ଜାଣେ । ମାଲୁଣୀ ବୋଇଲା—ମୁଁ ଏକଥା ଥଟ୍ଟାକରି କହିଲି ବୋଲି ବିଚାରିଲୁ କି ? ନାହିଁ ନାହିଁ, ଲୋକେ ସିନା କନ୍ଦର୍ପ ବୋଲି ଉପମା ଦେଇ କହନ୍ତି, କିନ୍ତୁ ମୁଁ ସାକ୍ଷାତରେ ଦେଖିଲି ତୁମ୍ଭ ପତି ଯୁବା ଏବଂ କନ୍ଦର୍ପରୁ ଅଧିକ ସୁନ୍ଦର । ସେ କପଟରେ ବୃଦ୍ଧବେଶ କେଜାଣି କାହିଁକି ଧରି ଅଛନ୍ତି । ଏହା ଶୁଣି ସରୋଜନୀ ଆଶ୍ଚର୍ଯ୍ୟ ହୋଇ ଚିତ୍ରପୁତ୍ତଳୀ ପରି ମାଲୁଣୀଙ୍କି ଚାହିଁ ରହିଲା । ମାଲୁଣୀ ଗତ ରାତିରେ ଯାହା ଦେଖିଥିଲା, ସେ କଥା ସବୁ ମୂଳରୁ ଶେଷଯାଏ କହିଗଲା । ସରୋଜନୀ ବୋଇଲା—ଯେବେ ସତ କହୁଅଛ, ମୋତେ ଦେଖାଇ ଦେଇ ପାରିବ କି ? ମାଲୁଣୀ କହିଲା—ଆଜି ସଞ୍ଜବେଳେ ତୁମ୍ଭେ ରଜାଘରକୁ ଯାତ୍ରା ଦେଖିଯିବ ବୋଲି କହି ମୋ ଘରେ ଲୁଚି ରହିଲେ ତ ନିଜେ ଦେଖିବ, ମୁଁ ଆଉ ଦେଖାଇଦେବି କଣ ? ଏପରି ସେ ଦୁହେଁ ବିଚାରି ଥିରାଇ ସେଥି କାମରେ ଲାଗିଲେ ।

ସନ୍ଧ୍ୟାବେଳ ହେବାରୁ ସଦେ୍ରଜନୀ ପଡ଼ସେବା ସାର ତାଙ୍କ ଖାଇବାକୁ ଦେଇ ବିନୟରେ ହାତଯୋଡ଼ି କହିଲା, ଆଜ ପୁଣି କାଲିଠାରୁ ଅଧିକ ଯାତ୍ରା ହେଉଅଛୁ, ମୋତେ ଆଜ୍ଞା ଦେଲେ ଦେଖିଯିବା ପାଇଁ ଆଜ୍ଞା ହୁଅ । ତାହା ଶୁଣି ସେ ବୃଦ୍ଧ ଯାଅ ବୋଲ୍ କହନ୍ତାରୁ ସଦେ୍ରଜନୀ ଘରୁ ଯାଇ ମାଲୁଣୀ ଘରେ ଲୁଚି ରହିଲା । ତହିଁ ଉତ୍ତାରୁ କିଛି ସମୟ ଗଲା ପରେ ମନମୋହନ ଚର୍ମବେଶ ବାହାର କ ଘରେ ଥୋଇଦେଇ ନିଜ ବେଶରେ ଘୋଡ଼ା ଉପରେ ବସି ଯାତ୍ରା ଦେଖିବା ଇଚ୍ଛାରେ ରଜାଘରକୁ ଯିବାପାଇଁ ବାହାରିଲେ । ସଦେ୍ରଜନୀ ତ ମାଲୁଣୀ ଘରେ ଲୁଚିଥିଲା । ସେ ମନମୋହନଙ୍କର କନ୍ଦର୍ପ ତୁଲ୍ୟ ରୂପକୁ ଦେଖି ମନେ ମନେ ବିଧାତାଙ୍କୁ ବହୁତ ପ୍ରଶଂସା କଲା । ତହିଁପରେ ଆନନ୍ଦରେ ହସି ହସି ମାଲୁଣୀକୁ ଗୁହିଁ ବୋଇଲା—ତୁମ୍ଭେ ଯାହା କହୁଥିଲ ତାହା ତଳେ ମିଛ ନୁହେଁ । ସବୁ ସତ, ହେଲେ ଏବେ କଣ କରିବା କହିଲ ? ମାଲୁଣୀ ବୋଇଲା—ତାଙ୍କର ଏ ଚର୍ମ ବେଶଟି ପୋଡ଼ିଦେଲେ ଭଲ ହୁଅନ୍ତା, ମାତ୍ର ସେ କାହିଁକି ଏମନ୍ତ ବୁଢ଼ା ବେଶ ଧରି ଅଛନ୍ତି ତାହା ତ ଆମ୍ଭେ ଜାଣି ନ ଥାଇଁ । ପୋଡ଼ିଦେବା ବୋଇଲେ କେଜାଣି ତହିଁରୁ କଣ ଅପଦ ଘଟିପାରେ ? ଏଣୁ ମୁଁ କହୁଅଛୁ ସେ ତ ଯାତ୍ରା ଦେଖିବାକୁ ନିଜ ବେଶରେ ବାହାରି ଗଲେଣି । ତୁମ୍ଭେ ଏବେ ତାଙ୍କର ସେ ଚର୍ମବେଶଟିକି ଲେଗୁଡ଼ିକ ବୁଜୁଳା ବାନ୍ଧି ସଙ୍ଗେ ସଙ୍ଗେ ଧରି ଅସ । ଆମେ ମଧ୍ୟ ଯାତ୍ରା ଦେଖିବାକୁ ଯିବା, ତେଣୁ ଫେରିଆସିଲା ବେଳକୁ ସେ ଆଗ ହୋଇ ବାହାରି ଆସି ଚର୍ମ ବେଶଟି ଖୋଜୁଥିବେ । ତୁମ୍ଭେ ସେତିକିବେଳେ ଆସିଲେ ବଳେ ସାର କଥାଟା ଜଣା ପଡ଼ିଯିବ । ଏହା ଶୁଣି ସଦେ୍ରଜନୀ ସେ ଚର୍ମବେଶଟିକି ବନ୍ଧାବନ୍ଧ କରି କାଖରେ ଜାକିଲା । ମାଲୁଣୀ ସଙ୍ଗେ ମିଶି ଦୁହେଁ ଯାତ୍ରା ଦେଖିବାକୁ ଗ୍ଲଲିଗଲେ । ଦାଇବରେ

ସରୋଜକମାର ବଡ଼ ଭଉଣୀମାନେ ଯେଉଁଠାରେ ବହୁ ଉତ୍ସବ ଦେଖୁଥିଲେ ସେହିଠାରେ ଏ ଦୁହେଁ ଯାଇ ଦେଖିଲେ । ବଡ଼ଭଉଣୀମାନେ ତାଙ୍କର ନିଜ ନିଜ ପତିମାନଙ୍କୁ ଚିହ୍ନାଇବାରୁ ସରୋଜକମ ମଧ୍ୟ ମନମୋହନଙ୍କୁ ଚିହ୍ନାଇ କହିଲା—ଏହି ମୋର ସ୍ୱାମୀ ଅଟନ୍ତି । ତାଙ୍କୁ ଦେଖି ବଡ଼ ଭଉଣୀମାନେ ଆଶ୍ଚର୍ଯ୍ୟ ହୋଇ କହିଲେ—ବାପା ତ ତୋତେ ବୁଢ଼ା ବରଟେ ବାହା କରାଇଲେ, ତୁ ଏବେ କନ୍ଦର୍ପ ପରି ରୂପବନ୍ତ ଷୋଳ ସମର୍ଥ ଯୁବାପୁରୁଷ ଜଣକୁ ମୋର ପତି ବୋଲି ଦେଖାଉଛୁ ଯେ, ଏଥିରୁ ଜଣାଯାଉଅଛି ତୁ ନିଶ୍ଚେ କୁଳଧର୍ମ ଛାଡ଼ି ବ୍ୟଭିଚାରିଣୀ ହେଲୁଣି । ଏହା କହି ସେମାନେ ସେହିକ୍ଷଣି ସେଠାରୁ ଧାଇଁ ଯାଇ ସେ କଥା ରଜାଙ୍କ ଅଗରେ କହିଲେ । ରଜା ଶୁଣିବା ମାତ୍ରେ ସରୋଜକମାର ନିକଟକୁ ଯାଇ ତାକୁ ପଚାରିଲେ—ମୁଁ ତ ତୋତେ ବୁଢ଼ାବର ଗୋଟେ ବାହା କରାଇ ଦେଇଥିଲି, ତୁ ଏବେ ଅନ୍ୟ ଯୁବକ ପୁରୁଷ ଜଣକ ପତି ବୋଲି କପରି ଦେଖାଉଅଛୁ ? ସରୋଜକମ ବୋଇଲା—ବାପା ମୁଁ ପରା କହିଥିଲି, ଏ ସଂସାରରେ ସମସ୍ତେ ନିଜ ନିଜ କର୍ମ ଭୋଗ କରନ୍ତି ବୋଲି । ତୁମେ ମୋତେ କପଟରେ ବୁଢ଼ା ବରଟା ବାହା କରାଇ ଦେଲ ଯେ କଣ ହେବ ? ସେହି ବୁଢ଼ା ବରଟା ମୋ କର୍ମକୁ ଯୁବା ହୋଇଗଲେ । ରଜା ଏ କଥା ଶୁଣି ଅସମ୍ଭବ ମନେକରି ସରୋଜକମ ତୁ ବ୍ୟଭିଚାରିଣୀ ହେଲୁ ବୋଲି ବହୁତ ଧିକ୍କାର କଲେ । ସରୋଜକମ ବୋଇଲା—ବାପା ଆଖି ଥାଉ ଥାଉ ଅନ୍ଧ ହେଲପରି ତୁଚ୍ଛାଟାରେ କାହିଁକି ମୋତେ ଧିକ୍କାରୁଅଛ ? ଯେବେ ସତ ମିଛ ବୁଝିବାକୁ ମନ ହେଉଅଛି, ତାହାହେଲେ ସେ ପୁରୁଷଙ୍କୁ ଏଠାକୁ ଡକାଇ ଅଣ । ମୁଁ ସାକ୍ଷାତରେ ସତ ମିଛ ଦେଖାଇ ଦେବି । ଏହା ଶୁଣି ରଜା ଚପରାଶି ପଠାଇ ମନମୋହନଙ୍କୁ ସେଠାରୁ ଡାକି ଅଣିଲେ ।

ସର୍ବେଶ୍ୱରୀ ଯେଉଁ ଚର୍ମବେଶଟି କାଖରେ ଜାକିଥିଲା, ସେଇଟା ତାଙ୍କ ଉପରକୁ ଫିଙ୍ଗି ଦେଲା ଯେ, ମନମୋହନ ତକ୍ଷଣେ ପୂର୍ବପରି ବୁଢ଼ା ହୋଇଗଲେ । ତାହା ଦେଖି ରାଜା ଅବାକ୍ ହୋଇ କ୍ଷଣକାଳ ପରେ ମନମୋହନଙ୍କୁ କହିଲେ—ତୁମ୍ଭେ ଆଜିଠାରୁ ଏ ବୃଦ୍ଧବେଶ ତ୍ୟାଗ କରି ନିଜ ବେଶ ଧାରଣ କର । ତୁମ୍ଭ କେଉଁ କୁଳରେ ଜନ୍ମ ହୋଇଅଛ, ତୁମ୍ଭର ନାମ କଅଣ, ତୁମ୍ଭର ପିତାମାତା କିଏ ସେ ସବୁର ପରିଚୟ ଦିଅ । ରଜା ଏପରି କହିବାରୁ ମନମୋହନ ନିଜ ବେଶ ଧରି କୁଳଗୋତ୍ର ଆଦି ସକଳ ବିଷୟରେ ପରିଚୟ ଦେଲେ । ରଜା ସେ ଚରିତ ଶୁଣିବା ମାତ୍ରେ ବଡ଼ ଆନନ୍ଦ ହୋଇ ସର୍ବେଶ୍ୱରୀ ସହିତ ତାଙ୍କୁ ପାଲିଙ୍କିରେ ବସାଇ ଘରକୁ ନେଇ ଗଲେ । ରାଣୀ ଆଦି ଅନ୍ତଃପୁର ନାରୀମାନଙ୍କର ମନ ଆନନ୍ଦରେ ଉଚ୍ଛୁଳି ପଡ଼ିଲା । ଆରଦିନ ସକାଳୁ ରଜା ସାତ କୁଅଁରଙ୍କୁ କହିଲେ— ତୁମ୍ଭେମାନେ ଶିକାର କରିବାକୁ ଯାଇ ସମସ୍ତେ ଗୋଟିଏ ଗୋଟିଏ ମୃଗ ମାରି ଆଣ, ଆଜି ବନ୍ଧୁ ବାନ୍ଧବମାନଙ୍କୁ ଭୋଜି ଦେବା ଏହା ଶୁଣି ବଡ଼ ଛଅ ଜ୍ୱାଇଁଯାକ ଏକମେଳ ହୋଇ ଘୋଡ଼ାରେ ବସି ଅସ୍ତ୍ର ଶସ୍ତ୍ର ଧରି ଶିକାର କରିବା ପାଇଁ ବଣକୁ ବାହାରିଲେ ସେମାନେ ମନମୋହନଙ୍କୁ ସଙ୍ଗରେ ଯିବାପାଇଁ ଡାକିଲେ ନାହିଁ ତାହା ଦେଖି ମନମୋହନ ମନେ ମନେ ରାଗିଯାଇ ନିଜ ଘୋଡ଼ାରେ ବସି ବଣ ନିକଟରେ ପହଞ୍ଚିଲେ । ସେଠାରେ ବ୍ରହ୍ମରାକ୍ଷସକୁ ମନେ ମନେ ସୁମରଣା କରିବାରୁ ସେ ତକ୍ଷଣେ ଆସି ପହଞ୍ଚିଲା ଦାଢ଼ୁଆ, ଠେଙ୍ଗା, ନଳୀ ଏମାନଙ୍କୁ ସୁମରଣା କରିବାରୁ ସେମାନେ ଆସିଗଲେ । ତହିଁପରେ ମନମୋହନ ବ୍ରହ୍ମରାକ୍ଷସକୁ ବୋଇଲେ ତୁମ୍ଭେ ଏ ବଣ ମଝିରେ ମାୟାରେ ଗୋଟିଏ ଋଷି ଆଶ୍ରମ ନିର୍ମାଣ କର । ସେ ଆଶ୍ରମଟି ଗୃହସ୍ଥାଶ୍ରମ ଅପେକ୍ଷା ଅଧିକ ହୋଇଥିବ । ତାର ଦ୍ୱାର ପାଖରେ ମେଘନାଦ ପାଚେରି ବୁଲିଥିବ । ତତ୍ପାର୍ଶ୍ୱରେ

ସୁନ୍ଦରଗୋଟି ଚୋରସ୍ୱା ପୁଅର ଥିବ । ଆଶ୍ରମ ଭିତରେ ପୋଖରୀ ଏବଂ ମନୋହର ଫଳ ଫୁଲର ବଗିଚା ଥିବ । ଏହା ଶୁଣି ବ୍ରହ୍ମରାକ୍ଷସ ତତ୍‌କ୍ଷଣେ ସେହିପରି ଆଶ୍ରମଟିଏ ମାୟାରେ ତିଆରି କରିଦେଲା । ମନମୋହନ ଦଣ୍ଡିଙ୍କ ଗୁହାରି କହିଲେ—ଏ ବଣରେ ଯେତେ ପ୍ରକାରେ ଜୀବଜନ୍ତୁ ଅଛନ୍ତି, ତୁ ସେଥିରୁ ଗୋଟିଏ ନ ଛାଡ଼ି ସମସ୍ତଙ୍କୁ ଏହି ଆଶ୍ରମ ଭିତରକୁ ବାନ୍ଧି ଆଣେ । ସେ ଆସିଗଲା ପରେ ଠେଙ୍ଗା ପୂର୍ବଦ୍ୱାରେ ଜଗି ରହୁ, ଅନ୍ୟ ତିନିଦ୍ୱାର ବନ୍ଦ କରିଦିଅ । ଏପରି ଆଦେଶ ଦେଇ ନିଜେ ତପସ୍ୱୀ ବେଶ ଧରି ତପସ୍ୟା କରିବାକୁ ବସିଲେ । ଦଣ୍ଡି ସବୁ ଜୀବଙ୍କୁ ... ଆଣି ଭିତରେ ଛାଡ଼ିଦେଲା । ଠେଙ୍ଗା ଦ୍ୱାର ଜଗିଲା, ବ୍ରହ୍ମରାକ୍ଷସ ଶିଷ୍ୟ ହୋଇ ସେ ମାୟାତପସ୍ୱୀର ସେବାରେ ରହିଲା ।

ଏଣେ ରାଜାଙ୍କର ବଡ଼ ଛଅ ଜ୍ୱାଇଁଯାକ ବଣରେ ବୁଲି ବୁଲି ଗୋଟିଏ ହେଲେ ମୃଗ ପାଇଲେ ନାହିଁ କି ପକ୍ଷୀଟିଏ ସୁଦ୍ଧା ପାଇଲେ ନାହିଁ । ବୁଲି ବୁଲି ବେଳ ଦାଣ୍ଡଡ଼ ହୋଇଗଲା । ପରଶେଷରେ ନିରାଶ ହୋଇ ଫେରିଲାବେଳକୁ ସେହି ଋଷିଆଶ୍ରମରେ ଯାଇ ପହଞ୍ଚିଲେ । ଦେଖିଲେ ଯେ ବଣର ଯେତେ ଜୀବଜନ୍ତୁ ସବୁ ସେ ଭିତରେ ବୁଲୁଅଛନ୍ତି । ଏଥିରୁ କେତୋଟା ମାରିନେବା ବୋଲି କାଣ୍ଡ ବାଛିବା ପାଇଁ ଧନୁରେ ଗୁଣ ଦେବାରୁ ବ୍ରହ୍ମରାକ୍ଷସ ଶିଷ୍ୟ ରୂପରେ ଧାଇଁଯାଇ ତାଙ୍କୁ ମନାକଲା । ସେମାନେ ବଳଗର୍ବରେ ତାର ମନା ନ ମାନି ଜନ୍ତୁ ମାରିବାକୁ ଅଗ୍ରସର ହେବାରୁ ବ୍ରହ୍ମରାକ୍ଷସ କ୍ରୋଧରେ ଚକ୍ଷପର ଆଖି ବୁଲାଇ ଠେଙ୍ଗାକୁ ଧରି ଗୋଟାକ ଉପରେ ଛେଚିଦେଲା ଯେ, ଛଅଟାଯାକ ଫଳକେ ଫଳକେ ରକ୍ତବାନ୍ତି କରି ପଡ଼ି ରହିଲେ । ଦଣ୍ଡେକାଳ ଗଲାପରେ ଚେତ ପାଇ ଋଷିଙ୍କ ପାଖକୁ ଯାଇ କରଯୋଡ଼ି ତାଙ୍କୁ କହିଲେ, ଆମ୍ଭେ ନ ଜାଣିବା ପଣରେ ଆପଣଙ୍କ ଶିଷ୍ୟ ହାତରେ ଯେଉଁ ମାଡ଼

ଖାଇଲ୍ ତାହା ଜାଣ ଥିବାଯାକ ମନେ ପଡ଼ୁଥିବ । ଏଥିରେ ଅଧିକ ଅଜ୍ କଣ କହିବୁ, ଆପଣ ଦୟାକରି ଆମ୍ଭଙ୍କୁ ଗୋଟିଏ ଲେଖେଁ ମୃଗ ଦିଅନ୍ତୁ, ଅମ୍ଭେ ମାରିନେବୁ ନ ଦେଲେ ଅମ୍ଭର ଗୌରବ ରକ୍ଷା ହେବ ନାହିଁ । ଏହା ଶୁଣି ସେ ମାୟା ତପସ୍ୱୀ କହିଲେ— ତୁମ୍ଭେମାନେ ଯେବେ ମୋର ଦାସ ହେଲ ବୋଲି ସ୍ୱୀକାର କରିବ ତା ହେଲେ ତୁମ୍ଭ ପିଠିରେ ଚନ୍ଦ୍ର ଲଗି ତୁମ୍ଭଙ୍କୁ ଛ' ଗୋଟି ମୃଗ ଦେବି, ନୋହିଲେ ଦିଆଯିବ ନାହିଁ । ଏହା ଶୁଣି ସେମାନେ ବିଚାର କଲେ ଏ ଋଷି ଅଳପ ଦିନରେ ଅଛନ୍ତି, ପୁଣି ମନ ହେଲେ କୁଆଡ଼େ ତୀର୍ଥ କରିବାକୁ ଚାଲିଯିବେ । ଅମ୍ଭେ ଏହାଙ୍କର ଦାସ ହେଲେ ବୋଲି କିଏ କାହିଁକି ଜାଣିବ ଯେ, ଅମ୍ଭଙ୍କୁ ନିନ୍ଦା ଅସିବ । ଦାସ ହେଲୁଁ ବୋଲି କହିଦେଇ ଚାଲି ମୃଗ ଛଅଟା ମାରିନେବା । ଏମନ୍ତ ବିଚାର କରି ହେଉ ବୋଲି ତାଙ୍କ କଥାରେ ରାଜି ହେଲେ । ଋଷି ଗୋଟିଏ ତମ୍ବା ଚକ ନିଆଁରେ ତତାଇ ସେ ଛଅ ଜଣଙ୍କ ପିଠିରେ ଛାପା ଦେଇ ଶିଷ୍ୟକୁ ବୋଇଲେ ଏମାନଙ୍କୁ ଛଅଗୋଟି ମୃଗ ବାଛି ବାଛି ଦେଖାଇ ଦିଅ, ଏ ମାରି ନିଅନ୍ତୁ । ବ୍ରହ୍ମ ରାକ୍ଷସ ତାଙ୍କ କଥା ଜାଣି ଛଅଟା ବେଗଣା ବୁଢ଼ା ମିରିଗ ତାଙ୍କୁ ଦେଖାଇଦେଲା । ସେମାନେ ସେ ଛଅଟାଯାକଙ୍କୁ ମାରି ବହି ନେଲେ । ତହିଁପରେ ମନମୋହନ ଋଷି ବେଶ ଛାଡ଼ି ବାଛିକରି ତରୁଣ ମୃଗ ଦୁଇଟା ମାରି ସେ ଆଶ୍ରମ ଭାଙ୍ଗିଦେଇ ବ୍ରହ୍ମରାକ୍ଷସକୁ ବୋଇଲେ; ସେମାନେ ନ ଯିବା ପୂର୍ବରୁ ଏ ମୃଗଦୁଇଟା ସହିତ ମୋତେ ବହିନେଇ ଶ୍ୱଶୁରଙ୍କ ଦୁଆରେ ଛାଡ଼ିଦେ । ବ୍ରହ୍ମରାକ୍ଷସ ନିଜ ରୂପଧରି ଘୋଡ଼ା ଅଜ ମୃଗ ଦୁଇଟା ସହିତ ମନମୋହନଙ୍କୁ ଆକାଶମାର୍ଗରେ ଉଡ଼ାଇ ନେଇ ବଡ଼ ଛଅଜଣ ନ ଯିବା ପୂର୍ବରୁ ରଜାଙ୍କ ଗଡ଼ ପାଖରେ ଛାଡ଼ିଦେଲା । ମନମୋହନ ସେ ମୃଗ ଦୁଇଟି ନେଇ ଶ୍ୱଶୁରଙ୍କୁ ଦେଲେ । ଅଜ୍ମାନେ କୁଆଡ଼େ ଗଲେ ବୋଲି

ରଜା ପଗ୍ଭରବାରୁ ସେ କହ୍ଲେ—ଗଲବେଳରୁ ତାଙ୍କର ମୋର ଭେଟ ନାହିଁ । ଏପର ପଗ୍ଭରୁ ପଗ୍ଭରୁ ବଡ଼ ଛଅଜ୍ୱାଇଁ ଆସି ସେମାନେ ମାର ଅଣିଥିବା ଛଅଗୋଟି ମୃଗ ରଜାଙ୍କୁ ଦେଲେ । ସାତ ଜ୍ୱାଇଁ ଅଣିଥିବା ମାଂସରେ ସାତହାଣ୍ଡି ତରକାରୀ ରନ୍ଧା ହେଲ । ପୂର୍ବରୁ ପିଠାପଣା ଖୀରୀ ଖେଚେଡ଼ି ରନ୍ଧା ହୋଇଥିଲ । ସୂପକାରମାନେ ପାକ ନିର୍ବାହର ରଜାଙ୍କୁ ଜଣାଇଲେ । ରଜା ସେ ସାତ ଜ୍ୱାଇଁ ଏବଂ ଭାଇ ବନ୍ଧୁ ବାନ୍ଧବଙ୍କୁ ଧର ଭୋଜନରେ ବସି ଭୋଜନ କଲବେଳେ ସାନ ଜ୍ୱାଇଁ ଅଣିଥିବା ମାଂସକୁ ସମସ୍ତେ ବଡ଼ ପ୍ରଶଂସା କଲେ । ବଡ଼ ଜ୍ୱାଇଁମାନେ ତ ବୁଢ଼ା ମୃଗ ମାର ଅଣିଛନ୍ତି ସେ ମାଂସଗୁଡ଼ାକ ଦଉଡ଼ିପର ଦାନ୍ତରେ ଲେଇକିଲେ ସୁଖା ଛୁଡ଼ିଲ ନାହିଁ । ତେଣୁ ତାହା କେହି ନ ଖାଇ ଛୁ ଛୁ କଲେ । ରଜା ତହିଁର କାରଣ ପଗ୍ଭରବାରୁ ମନମୋହନ କହ୍ଲେ—ସେ ଛଅଜଣଯାକ ମୋର ଗୁଲମ । ତେଣୁ ମୁଁ ଅଣିବା ମାଂସ ସଙ୍ଗେ ସେମାନେ ଅଣିବା ମାଂସ କପର ସମାନ ହେବ ? ଏହା ଶୁଣି ରଜା ଅଶ୍ଚର୍ଯ୍ୟ ହୋଇ ବୋଇଲେ—ତୁମ୍ଭର ସେମାନେ ଗୁଲମ ବୋଲ୍ କଣ ଚିହ୍ନ ରଖିଅଛ କି ? ମନମୋହନ ବୋଇଲେ, ମୁଁ ସେମାନଙ୍କ ପିଠିରେ ଚକ ଚିହ୍ନ ରଖିଅଛି, ଦେଖ । ଏହା ଶୁଣି ଶଳା ପ୍ରଭୃତି ଯେତେ ପରହାସ ଲୋକ ଥିଲେ, ସେମାନେ ବଳପୂର୍ବକ ତାଙ୍କ ପିଠିରୁ ଲୁଗା ଟେକ ଦେଖିଲ ବେଳକୁ ସତକୁ ସତ ସେହିପର ଚକ ଚିହ୍ନର ଛାପା ଦିଆଯାଇଅଛି ଯେ ଘା ଶୁଖିନାହିଁ । ତାହା ଦେଖି କେତେ ଲୋକ ଠହ ଠହ ହସିଲେ । ଅଉ କେତେକ ତହିଁର କାରଣ ପଗ୍ଭରବାରୁ ମନମୋହନ ସବୁ କଥାଯାକ ତାଙ୍କୁ କହିଗଲେ । ତାହା ଶୁଣି ମହାବସ୍ଥ ରଜା କହ୍ଲେ—ମୋର ସାନଝିଅ ଯାହା କହୁଥିଲ ତାହା ଅକ୍ଷରେ ଅକ୍ଷରେ ସତ୍ୟ । ଏ ସଂସାରରେ କେହି କାହାର

କର୍ମଭୋଗ କରୁ ନାହିଁ । ସମସ୍ତେ ନିଜ ନିଜ କର୍ମ ଭୋଗ କରୁଅଛନ୍ତି । ପିତା, ମାତା ଭାଇ, ଭାର୍ଯ୍ୟା ଇତ୍ୟାଦି ଯେ ଅନୁବନ୍ଧ ରହିଅଛି, ତାହା ସବୁ ସଂସାରର ଧର୍ମ ଅଟେ । ଏହା କହି ତାଙ୍କର ତ ପୁଅ ନ ଥିଲା, ତେଣୁ ମନମୋହନଙ୍କୁ ନିଜ ରାଜ୍ୟରେ ରାଜା କରାଇଲେ । ସରୋଜିନୀ ନିଜ କର୍ମବଳରେ ମନମୋହନଙ୍କୁ ପତିରୂପେ ପାଇ ପିତାଙ୍କ ରାଜ୍ୟରେ ରାଣୀ ହେଲେ । ବଡ଼ ଛଅ ଭଉଣୀଯାକ ମୁହିଁଟିମାନ ଶୁଖେଇ ଦେଇ ଯେ ଯାହାର ସ୍ୱାମୀ ସଙ୍ଗେ ଚାଲିଗଲେ । ମନମୋହନ ମହାରାଷ୍ଟ୍ର ଦେଶରେ ରାଜାହୋଇ ଆପଣାର ପିତା, ମାତା ଏବଂ ଭାଇ ଭଉଣୀମାନଙ୍କ କଥା ମନେ ପକାଇ ଭାବିଲେ, ଯେ ଯାହାର କର୍ମଫଳ ଭୋଗ କରୁଅଛନ୍ତି । ତେଣୁ ତାଙ୍କର ସାନଭଉଣୀକୁ ( କନକକୁ ) ଯେଉଁ ରାଜପୁତ୍ର-ହରି ନେଇଥିଲେ ତାଙ୍କ ଉପରେ କିଛିହେଲେ ବିଦ୍ୱେଷ ନ କରି ନିଜ ସୁଖରେ ନିଜେ ରାଜତ୍ୱ କଲେ । ମନମୋହନଙ୍କର ସେହି-ଚର୍ମ ବେଶଟି ନିଜର ସ୍ମୃତି ଚିହ୍ନ ରହିଥାଉ ବୋଲି ରଖାଇ-ଦେଇଅଛନ୍ତି ଯେ ତାହା ଅଦ୍ୟାବଧି ରହିଅଛି । ଅତେବ ଅବୋଲକରା ! ଶୁଣିଲୁ ତ କଥାର ମୂଳ । ପଥବାହି ପିବା ଉଠ ଚଞ୍ଚଳ ।

## ବାନରମୁଖୀ କଥା

ସାମନ୍ତ ଚର୍ମବେଶ କଥା କହି ସାରି ସେଠାରୁ ବାହାରିଲେ । ଅବୋଲକରା ଲୁଗାପଟା ଭାର ଧରି ତାଙ୍କ ପଛେ ପଛେ ଚାଲିଲା । ଯାଉ ଯାଉ କେତେଦୂର ପଥ ଲଙ୍ଘିଗଲା ପରେ ପାପନାଶିନୀ ତୀର୍ଥରେ ଯାଇ ପହଞ୍ଚିଲେ । ସେଠାରେ ସ୍ନାନ ପ୍ରକାର ଶେଷକରି ଖିଅପିଅ କଲେ । ଉପରବେଳା ସାମନ୍ତ ସନ୍ଧ୍ୟା ଉପାସନା କଲା ପରେ ଅଳ୍ପ କିଛି ଜଳଖିଆ କରି ମୃଗଛାଲରେ

ବସିଅଛନ୍ତି, ସେତକବେଳେ ଅବୋଲକରା ବୋଇଲା— ଗୋସେଇଁ ! ଏ ତୀର୍ଥର ନାମ ପାପନାଶିନୀ ତୀର୍ଥ କାହିଁକି ହୋଇଅଛି । ପୃଥିବୀରେ ଯେତେ ତୀର୍ଥ ଅଛି, ସେ ତୀର୍ଥମାନଙ୍କରେ ସ୍ନାନ କଲେ ପାପ ଛାଡ଼ିଯାଏ ବୋଲି ତ ଆପଣ କହୁଥିଲେ, ଆଜ ଏ ତୀର୍ଥର ନାମ ତାପନାଶିନୀ ବୋଲି କାହିଁକି ହେଲା ? ଏଥିର କାରଣ ମୋତେ ବୁଝାଇ ଦିଅ । ସାମନ୍ତ ବୋଇଲେ ଏ ତୀର୍ଥର ମହିମା ବିଷୟରେ ଗୋଟିଏ ପୁରାତନ ଇତିହାସ ଅଛି । ତୁ ଯେବେ ଶୁଣିବା ପାଇଁ ମନ କରୁଅଛୁ, ତାହା ହେଲେ—ପଙ୍କା କମ୍ବଳ ପୋତ ଛତା, ବସ ଅବୋଲକରା ଶୁଣୁ କଥା । ପୂର୍ବକାଳରେ ଏହି ତୀର୍ଥ ଅତି ଗୁପ୍ତରେ ଥିଲା । ଏହାର ଚାରିପଟରେ ବାଉଁଶ ବଣ ଘୋଟି ରହିଥିଲା ଯେ କେହିରେ ମାଛି ଗଳିବାକୁ ବାଟ ନ ଥାଏ । କେବଳ ଏହାର ଉତ୍ତର ଦିଗରେ ଏକପଦା ମାର୍ଗ ଗୋଟିଏ ଥାଏ ଯେ, ସେହି ବାଟରେ କେହି କେହି ମୁନି ଋଷି ପ୍ରଭୃତି ଜାଣିବା ଶୁଣିବା ଲୋକେ ସ୍ନାନ କରିବାକୁ ଆସନ୍ତି । ଏଥିରେ ଯେ ଥରେ ମାତ୍ର ସ୍ନାନ କରେ ତାକୁ ଅନାୟାସରେ ସ୍ବର୍ଗପଦ ଲାଭ ହୁଏ । କେତେଦିନ ଗଲାପରେ ବିନ୍ଧ୍ୟ ପର୍ବତରୁ ହନୁମାଙ୍କଡ଼ ପଲେ ଚରବୁଲି ଆସୁ ଆସୁ କ୍ରମେ କ୍ରମେ ଆସି ଆସି ଏଠାରେ ପହଞ୍ଚି ଗଲେ । ଏହା ନିକଟରେ ଅନେକ ଫଳବୃକ୍ଷ ଥାଏ । ତାଙ୍କୁ ପ୍ରଚୁର ଭାବରେ ଖାଇବାକୁ ମିଳିବାରୁ ଏଠାରେ ସେ ମାଙ୍କଡ଼ ପଲକ ଅନେକ କାଳ ରହିଥିଲେ । ମାଙ୍କଡ଼ମାନଙ୍କର ତ ମାଙ୍କଡ଼ିଆ ସ୍ବଭାବ, ତେଣୁ ସେମାନେ ଭୁଷ୍ଟାକୁ ଏ ଗଛରୁ ସେ ଗଛକୁ ଡେଇଁଥାନ୍ତି । ଦିନକର ସେ ମଧ୍ୟରୁ ଗୋଟିଏ ମାଈମାଙ୍କଡ଼ ଡେଇଁ ପଡ଼ିବ ବୋଇଲା ବେଳକୁ ଦଇବରେ ଖସି ପଡ଼ିଲା ଯେ ଏହି ତୀର୍ଥ ନିକଟ ବାଉଁଶ କୁମ୍ଭରେ ଚଢ଼ିଗଲା । ସେ ସମୟକୁ ଗୋଟିଏ ବଡ଼ ବୁଢ଼ା ବାଉଁଶ ଦୁଇଫାଳ ହୋଇ ରହିଥିଲା । ସେହି

ଦ୍‌ ଫାଲଅ ବାଉଁଶର ସନ୍ଧାରେ ମାଙ୍କଡ଼ର ବେକଟା ପଶିଗଲା ନେଯ ଆଉ ବାହାରିଲା ନାହିଁ । ମାଙ୍କଡ଼ଟି ପ୍ରାଣ ବିକଳରେ ଘଡ଼ିଏ ଯାଏ ଛଟପଟ ହୋଇ ମରିଗଲା । ତାହା ଦେଖି ଅନ୍ୟ ମାଙ୍କଡ଼ ସବୁ ଭୟ କରି ଏଠାରୁ ପଳାଇ ଗଲେ । ଯେଉଁ ମାଙ୍କଡ଼ଟି ମରି କରି କୁମ୍ଭରେ ଲାଗିଥିଲା, ତାର ମୁଣ୍ଡଟି ମାତ୍ର ସେ ବାଉଁଶ ସନ୍ଧାରେ ଲାଗି ରହିଲା, ବାକୀ ସର୍ବାଙ୍ଗ ଶରୀର ମିଳାଇ ଖସି ପଡ଼ିଲା । ମାଂସଯାକ ପଡ଼ିକରି ଖତମ ହୋଇଗଲା । ହାଡ଼ଯାକ ସେହି କୁମ୍ଭମୂଳେ ପଡ଼ିଥାଏ । ଦିନକର ବଡ଼ ବର୍ଷା ହେବାରୁ ସେହି ବର୍ଷା ପାଣିରେ ସେ ହାଡ଼ଯାକ ଭାସି ଭାସି ଏହି ପାପନାଶିନୀ ତୀର୍ଥରେ ପଡ଼ିଗଲା । ପୁଣ୍ୟ ତୀର୍ଥରେ ହାଡ଼ ଗୁଡ଼ିକ ପଡ଼ିଯିବାରୁ ସେ ବାନରର ଆତ୍ମା ପବିତ୍ର ହୋଇ ଦଶାର୍ଣ୍ଣ ଦେଶ ରାଜାଙ୍କର ଗୃହରେ କନ୍ୟା ହୋଇ ଜନ୍ମ ଗ୍ରହଣ କଲା । ସେ କନ୍ୟାର ପାଦଠାରୁ ବେକ ପର୍ଯ୍ୟନ୍ତ ଏପରି ସୁନ୍ଦର ଦେଖାଗଲା ଯେ ତାକୁ ରତି ପାର୍ବତୀ ଅବା ସମାନ ହେବେ । କିନ୍ତୁ ମୁହଁଟି ତାର ମାଙ୍କଡ଼ ମୁହଁ ହୋଇଥାଏ । ଏପରି ଅସମ୍ଭବ ଘଟଣା ଦେଖି ପିତାମାତା ତାର ନାମ ବାନରମୁଖୀ ବୋଲି ଦେଇଥିଲେ । ମୁହଁକୁ ଛାଡ଼ି ତାର ଅନ୍ୟ ଅଙ୍ଗ ପ୍ରତ୍ୟଙ୍ଗମାନଙ୍କୁ ଦେଖିଲେ ଋଷି ହେଲେ ମଧ୍ୟ ମୋହିତ ହୋଇଯିବ । ତାଠାରେ ସକଳ ପ୍ରକାର ଗୁଣ ଏବଂ ସର୍ବ ସୁଲକ୍ଷଣ ପୂରି ରହିଥିଲା । ଏ ସବୁ ଥିଲେ କଣ ହେବ, ଦେହଯାକରେ ତ ମୁହଁଟି ସାର; ମୁହଁଟି ତ ମାଙ୍କଡ଼ ମୁହଁ ହୋଇଅଛି; ତେଣୁ ସେ କନ୍ୟା ଲଜ୍ଜାରେ କାହାରି ମୁହଁକୁ ଚାହେଁ ନାହିଁ । ସବୁବେଳେ ମୁହଁଟିକୁ ଘୋଡ଼ାଇ ରଖିଥାଏ । ମାତ୍ର ଏ ତୀର୍ଥର ପୁଣ୍ୟ ପ୍ରଭାବରୁ ସେ ପୂର୍ବଜନ୍ମର କଥାଯାକ ଜାତିସ୍ମର ହୋଇ ଜାଣି ପାରୁଥାଏ । ପୂର୍ବ ଯେପରି ମାଙ୍କଡ଼ୀ ହୋଇଥିଲା, ଯେପରି ମଲା, ମୁଣ୍ଡ ଯେଉଁଠାରେ ରହିଲା, ଗଣ୍ଡି ଭାସିଯାଇ ପାପନାଶିନୀ ତୀର୍ଥରେ

ଯେପରି ପଡ଼ନ୍ତି ତା ସବୁ ଅବିକଳ ତାକୁ ଦିଶୁଥାଏ । ସେ କଥା କାହାରି ଆଗରେ ନ କହି ମନେ ମନେ ଈଶ୍ୱରଙ୍କ ବାଟ ଚାହାଁ କରୁଥାଏ । ଏହିପରି କେତେକାଳ ବିତିଗଲା ପରେ ତାର ବିବାହ ବୟସ ହେଲା । ଦଶାର୍ଣ୍ଣ ଦେଶ ରାଜା ତାକୁ ବାହା କରାଇବା ପାଇଁ ବରପାତ୍ର ଖୋଜାଇଲେ । ଅନ୍ୟ ଦେଶର ରାଜପୁତ୍ରମାନେ ସେ କନ୍ୟାର ମାଙ୍କଡ଼ମୁହଁ ହୋଇଥିବାର ଶୁଣି ତାକୁ ବାହା ହେବାକୁ ରାଜି ହେଲେ ନାହିଁ ।

ଚନ୍ଦ୍ରାଙ୍ଗଦ ନାମରେ କାଶୀଦେଶର ଯୁବରାଜ ଥିଲେ । ସେ ବଡ଼ ଧାର୍ମିକ, ଗୁଣବାନ୍, ରୂପବାନ୍, ବଳବାନ୍, ପ୍ରଜାବତ୍ସଳ ଏବଂ ଭବିଷ୍ୟତଜ୍ଞାତା ଅଟନ୍ତି । ସେ ଦିନେ ବିଦେଶୀ ବ୍ରାହ୍ମଣମାନଙ୍କଠାରୁ ସେହି ବାନରମୁଖୀ କନ୍ୟାର ଗୁଣାବଳୀ ଏବଂ ସୁନ୍ଦରପଣ ଶ୍ରବଣ କରି ତାଙ୍କର ପାଟଜ୍ୟୋତିଷକୁ ତା କଥା ପଚାରିଲେ । କାଶୀଧାମରେ ସକଳ ପ୍ରକାର ଉତ୍ତମ ଉତ୍ତମ ଦୂରଦର୍ଶୀ ପଣ୍ଡିତ ସମୂହ ଥାନ୍ତି । ସେ ପଣ୍ଡିତମାନଙ୍କ ସଙ୍ଗେ ଧରି ପାଟ ଜ୍ୟୋତିଷ କହିଲେ— ମହାରାଜ ! ବାନରମୁଖୀ କନ୍ୟା ବଡ଼ ଭାଗ୍ୟବତୀ । ତାର ମୁହଁଟି ମାତ୍ର ମାଙ୍କଡ଼ ପରି ହେଲେ କଣ ହେଲା, ଏ ପୃଥିବୀରେ ଯେତେ ସୁନ୍ଦରୀ ସ୍ତ୍ରୀ ଅଛନ୍ତି, ତାର ଗୋଡ଼ତଳକୁ କେହି ସମାନ ନୁହନ୍ତି । ସେ କନ୍ୟାର ଯେତେ ସୁଗୁଣ ଅଛି, ସ୍ୱର୍ଗ ସ୍ତ୍ରୀମାନଙ୍କର ମଧ୍ୟ ସେପରି ସୁଗୁଣ ନ ଥିବ । ଜ୍ୟୋତିଷ ଶାସ୍ତ୍ର ଗଣନା କଲେ ଜଣାଯାଉଅଛି ଯେ ଅଉ ସାତବର୍ଷ ମଧ୍ୟରେ ତାର ବାନର ମୁଖ କୁଆଡ଼େ ଉଭେଇ ଯାଇ ପୂର୍ଣ୍ଣଚନ୍ଦ୍ର ପରି ହୋଇଯିବ । ଏଣୁ ତୁମ୍ଭେ କିଛି ବିଚାର ନ କରି ସେ କନ୍ୟାକୁ ଶୀଘ୍ର ବିବାହ ହୁଅ । ଏହା ଶୁଣି ଚନ୍ଦ୍ରାଙ୍ଗଦ ଆନନ୍ଦ ମନରେ ଦଶାର୍ଣ୍ଣ ଦେଶ ରାଜାଙ୍କୁ ମାଗି ସେ କନ୍ୟାକୁ ବାହାହେଲେ । ନାନାଦି ଉତ୍ସବରେ ବିଭାଘର ସରିଲା, ଯଉତି ଧନ କନ୍ୟାକୁ ଘେନି ଚନ୍ଦ୍ରାଙ୍ଗଦ ନିଜ ଦେଶକୁ ଗଲେ ।

ଶଶାଙ୍କଙ୍କୁ ପତିରୂପେ ପାଇ ତାଙ୍କ ସେବାରେ ବାନରମୁଖୀ ଏପରି ତତ୍ପର ହେଲେ ଯେ ତାହା କହିଲେ ନ ସରେ । ଶଶାଙ୍କଦ ତହିଁରେ ସନ୍ତୁଷ୍ଟ ନହୋଇ ଏପରି ହୃଷ୍ଟ ହେଲେ ଯେ ଭାର୍ଯ୍ୟାର ମୁଖ ବାନର ପରି ହେଲେ ସୁଦ୍ଧା ସେଥିପାଇଁ ତାଙ୍କ ମନରେ ଲେଶମାତ୍ର ଶୋଚନା ହେଉ ନାହିଁ । ଲୋକେ ତ କହନ୍ତି—'ଯାହାର ମନ ଯହିଁକି ବସେ, ଅସୁନ୍ଦର ହେଲେ ସୁନ୍ଦର ଦିଶେ ।' ସେହିପରି ଯ . ଯେବେ ମିଳିଗଲା ମନୁଷ ମୁହଁ ହେଲେ ଭଣେ ହେବ, ମାଙ୍କଡ଼ ମୁହଁ ହେଲେ ଭଣେ ହେବ ଦୁହେଁ ପରସ୍ପର ସ୍ନେହରେ ବୁଡ଼ି ଦିନ କଟାଇଲେ । କିଛିଦିନ ଗଲା ପରେ ସେ ବାନରମୁଖୀ ସର୍ଣ୍ଣକଣ୍ଠିକା ନିକଟରେ ଗୋଟିଏ ଧର୍ମଶାଳା ତୋଳାଇ ସେଠାରେ ପ୍ରତିଦିନ ତୋଡ଼ିଏ ଜଣ ବ୍ରାହ୍ମଣଙ୍କ ପାଇଁ ଉତ୍ତମ ଭୋଜନ ଖଞ୍ଜିଦେଲେ । ଅନ୍ୟ ଦୁଇଜଣ ଚରସ୍ୱିନୀଙ୍କୁ ସେଠାରେ ରଖାଇ ତାଙ୍କୁ କହିଥିଲି ଦକ୍ଷିଣ ଦେଶରୁ ଯେବେ କେହି ବ୍ରାହ୍ମଣ ଅସିବେ, ସେ ବ୍ରାହ୍ମଣଙ୍କୁ ମୋ ପାଖକୁ ଡାକି ଆଣିବ । ଚପସ୍ୱିନୀ ଦୁହେଁ ଯେ ଆଜ୍ଞା କହି ସେଠାରେ ସର୍ବଦା ଜଗି ରହିଲେ । ଖାଇବାକୁ ମିଳିବାରୁ ନାନାଦି ଦେଶ ବିଦେଶରୁ ବ୍ରାହ୍ମଣମାନେ ପ୍ରତ୍ୟହ ସେଠାକୁ ଅସି ଭୋଜନ କରୁଥାନ୍ତି । ଏହିପରି କେତେଦିନ ଗଲା ପରେ ଜଗନ୍ନାଥ ଦେଶର ଅନ୍ତର୍ଗତ ଶଙ୍ଖା ନାମକ ପଲ୍ଲୀର ବ୍ରାହ୍ମଣ ଜଣେ ଯାଇ ସେଠାରେ ଭୋଜନ କରିବାକୁ ଉପସ୍ଥିତ ହେଲେ । ଚପସ୍ୱିନୀ ଦୁହେଁ ତାଙ୍କୁ ଉତ୍ତମ ଭୋଜନ ଦେଇ ରାଣୀଙ୍କ ନିକଟକୁ ଡାକି ନେଲେ । ବାନରମୁଖୀ ସେ ବ୍ରାହ୍ମଣଙ୍କୁ ଶହେ ସୁବର୍ଣ୍ଣମୁଦ୍ରା ଦେଇ ଅନେକ ବିନୟ ହୋଇ କହିଲେ—ଅପଣ ବର୍ତ୍ତମାନ ଏହି ସୁବର୍ଣ୍ଣ ମୁଦ୍ରାତକ ନେଇ ମୋର ଗୋଟିଏ କାର୍ଯ୍ୟ କରିଦେବେ । ମୁଁ ସେ କାର୍ଯ୍ୟର ଫଳ ପାଇଲା ପରେ ଅପଣଙ୍କୁ ଗୃହଗୋଟି ଗ୍ରାମ ଏବଂ ତଦନୁରୂପ ଧନ ପ୍ରଦାନ କରିବି । ଏହା ଶୁଣି ବ୍ରାହ୍ମଣ କହିଲେ—ମୁଁ ତୁମ୍ଭର

କ କାର୍ଯ୍ୟ କରବି କହ ? ରାଣୀ ବୋଇଲେ, ତୁମ୍ଭେ ଏଠାରୁ ଯାଇ ପାପନାଶିନୀ ତୀର୍ଥରେ ପ୍ରବେଶ ହେବ । ସେ ତୀର୍ଥର ଉତ୍ତର ପଶ୍ଚିମ କୋଣରେ ଗୋଟିଏ ବଡ଼ ବାଉଁଶ କୁମ୍ପ ଅଛି । ସେ କୁମ୍ପରେ ଥିବା ଗୋଟିଏ ପୁରୁଣା ବାଉଁଶର କୀଚକ ରନ୍ଧ୍ରରେ ଗୋଟିଏ ମାଙ୍କଡ଼ ମୁଣ୍ଡର ହାଡ଼ଗୁଡ଼ିକ ଲାଗି ରହିଅଛି । ତୁମ୍ଭେ ତାହା ନିରୂପଣ କରି ସେଠାରୁ ସେ ହାଡ଼ତକ ଆଣି ପାପନାଶିନୀ ଜଳରେ ପକାଇ ଦେବ । ମୋର ଏତକ ମାତ୍ର ଉପକାର କଲେ ମୁଁ ତୁମ୍ଭଙ୍କୁ ଯାହା କହୁଅଛି, ତାହା ଅବଶ୍ୟ ଦେବି । ବ୍ରାହ୍ମଣ ବୋଇଲେ—ମୁଁ ହରଦ୍ୱାରକୁ ଯିବାପାଇଁ ଆସିଥିଲି । ତୁମ୍ଭେ ଯେବେ ଏତେ ବିନୟ ହୋଇ କହୁଅଛ, ତା ହେଲେ ଯାଉଅଛି ଆଗ ତୁମ୍ଭ କାର୍ଯ୍ୟ କରିବି । ପରେ ଆଉ ଥରେ ହରଦ୍ୱାର ଯିବାପାଇଁ ଆସିବି । ଏହା କହି ସେ ବ୍ରାହ୍ମଣ ସେହିଠାରୁ ଫେରି ଆସି ବହୁତ ଦିନପରେ ଏହି ପାପନାଶିନୀ ତୀର୍ଥ ନିକଟରେ ମିଳିଲେ । ଏଠାରେ ବାରମ୍ବାର ନିରୀକ୍ଷଣ କରି ସେ ଦେଖିଲେ ଯେ, ରାଣୀ ଯେଉଁପରି କହିଥିଲେ ସେହିପରି ଗୋଟିଏ ବାଉଁଶର କୀଚକ ରନ୍ଧ୍ରରେ ଶୁଖିଲା ମାଙ୍କଡ଼ ମୁଣ୍ଡଟିଏ ଲାଗିଥିଲା । ତାକୁ ବଡ଼ ଲମ୍ବା ନଳରେ କେଞ୍ଚାକେଞ୍ଚି କରି ତଳକୁ ଖସାଇ ଆଣି ପାପନାଶିନୀ ଜଳରେ ପକାଇ ଦେଲେ । ସେ ସମୟକୁ ସନ୍ଧ୍ୟାବେଳ ହୋଇଥିଲା । ସେ ମୁଣ୍ଡ ଜଳରେ ପଡ଼ିବା ମାତ୍ରେ ତେଣେ ବାନର-ମୁଖୀର ମାଙ୍କଡ଼ ମୁହଁ କୁଆଡ଼େ ଉଭେଇ ଯାଇ ଅକଳଙ୍କ ପୂର୍ଣ୍ଣଚନ୍ଦ୍ର ପରି ମୁଖମଣ୍ଡଳ ଦେଖାଗଲା । ସେ ଦର୍ପଣରେ ନିଜର ମୁଖଶୋଭା ଦେଖି ଆନନ୍ଦ ମନରେ ଅଭିତ୍ରାଣ ହୋତାଙ୍କୁ ଶତ ଶତ ପ୍ରଣାମ କରି ସେ କଥା କାହାକୁ କିଛି ନ କହି ସେ ରାତିକ ଅନ୍ଧାରରେ କଟାଇଲେ । ଆରଦିନ ସକାଳୁ ଶତ୍ରାଙ୍ଗଦ ନୃପତି ଦେଖିଲେ ଯେ ବାନରମୁଖୀର ମୁଖମଣ୍ଡଳ ଚନ୍ଦ୍ରମଣ୍ଡଳଠାରୁ ଅଧିକ ଅହ୍ଲାଦିତ ଦିଶୁଅଛି । ତେଣୁ ସେ ଅତି ଆନନ୍ଦିତ ହୋଇ

କହିଲେ—ପ୍ରିୟେ ! ତୁମ୍ଭେ କଣ ଆଜ ପର୍ଯ୍ୟନ୍ତ ମୋଠାରେ କପଟ କରିଥିଲ ? ଯେବେ କପଟ ନ କରିଥାନ୍ତ ତା ହେଲେ ବିନା ଔଷଧରେ ତୁମ୍ଭର ବାନର ମୁଖଟା ପୂର୍ଣ୍ଣଚନ୍ଦ୍ର ପରି ସୁନ୍ଦର ହୋଇଯାନ୍ତା ! ବାନରମୁଖୀ ବୋଇଲେ, ନାରୀମାନଙ୍କର ପତି ଏକା ଇଷ୍ଟଦେବତା । ଯେଉଁ ନାରୀ ସ୍ୱାମୀଠାରେ କପଟ କରେ, ତାଠାରୁ ପାପିନୀ ହୋଇ ଏ ସଂସାରରେ ଆଉ କିଏ ଅଛି ? ବର୍ତ୍ତମାନ ମୋର ବାନରମୁଖ ଯେଉଁ କାରଣରୁ ପୂର୍ଣ୍ଣଚନ୍ଦ୍ର ପରି ହୋଇଅଛି, ତାହା ଆଜ ତୁମ୍ଭଙ୍କୁ କହିବି ନାହିଁ । ଚାଲ, ମୁଁ ଯେଉଁ ତୀର୍ଥର ନାମ କହିବି ସେହି ତୀର୍ଥକୁ ଯିବା । ସେଠାରେ ତୁମ୍ଭେ ଏଥିର କାରଣ ସାକ୍ଷାତରେ ଦେଖି ପାରିବ । ଏହା ଶୁଣି ଚିତ୍ରାଙ୍ଗଦ ନୃପତି ସୈନ୍ୟ ସାମନ୍ତ, ପାଇକ ଯୁଜିତ, ହାତୀ, ଘୋଡ଼ା, ରଥୀ ପଦାତି ପ୍ରଭୃତି ଚତୁରଙ୍ଗ ବଳ ସଙ୍ଗରେ ଗୁରୁ ପୁରୋହିତଙ୍କ ସହିତ ପାପନାଶିନୀ ତୀର୍ଥକୁ ଯିବାପାଇଁ ଅନୁକୂଳ କଲେ । ଅନ୍ତଃପୁର ସ୍ତ୍ରୀମାନଙ୍କ ସହିତ ରାଣୀ ହାଡୋଲାରେ ବସି ବାହାରିଲେ । ମହାସମାରୋହରେ ଠାଟ ଚଳାଇ ରାଜା ରାଣୀ ଦୁହେଁ ଆସି କେତେଦିନ ପରେ ଏହି ପାପନାଶିନୀ ତୀର୍ଥରେ ପ୍ରବେଶ ହେଲେ । ଏଠାରେ ପ୍ରବେଶ ହେଲା ପରେ ଚିତ୍ରାଙ୍ଗଦଙ୍କୁ ବାନରମୁଖୀ ତାଙ୍କର ପୂର୍ବ ଚରିତଯାକ କହିଗଲେ । କାଶୀଶ୍ୱର ସେ ଚରିତଯାକ ଶ୍ରବଣ କରି ଅତି ଆଶ୍ଚର୍ଯ୍ୟ ହୋଇ ଏ ତୀର୍ଥର ଚାରିପାଖରୁ ବାଉଁଶ ବଣଯାକ କଟାଇ ପରିଷ୍କାର କରି ତୀର୍ଥର ଚାରିତୀରରେ ଘାଟ ବନ୍ଧାଇ ଦେଲେ । ତହିଁ ପରେ ଯେଉଁ ବ୍ରାହ୍ମଣ ଆସି ବାନର କପାଳକୁ ତୀର୍ଥଜଳରେ ପକାଇଥିଲେ, ସେହି ଅଭିଜ୍ଞାନ ହୋତାଙ୍କୁ ଡକାଇ ଆଣି ତାଙ୍କଦ୍ୱାରା ଏଠାରେ ଯଜ୍ଞକରି ଯଜ୍ଞ ଶେଷରେ ତାଙ୍କୁ ଗୃହକ୍ଷେତ୍ର ଗ୍ରାମ, ହାତୀ, ଘୋଡ଼ା, ଗାଈ, ଗୋରୁ, ଦାସ ଦାସୀ, ଧନରତ୍ନ, ବାଡ଼ି ବୃତ୍ତି ଏପରି ଅକଳନୀ ସମ୍ପତ୍ତି ପୁରସ୍କାର ଦେଇ, ପାପନାଶିନୀ ତୀର୍ଥରେ ଏକମାସ ରହି

ତହିଁପରେ ଅଡଥି ଅଜ ଗବବମାନଙ୍କୁ ଅନ୍ନ ବସ୍ତ୍ରରେ ସନ୍ତୋଷ କର ନସୈନ୍ୟ ସାମନ୍ତ ଧର ରାଣୀଙ୍କ ସହିତ ଯାଇ ନିଜ ରାଜ୍ୟ କାଶୀଧାମରେ ପ୍ରବେଶ ହେଲେ । ଅବେ ଅବୋଲକରା । ସେହି ଦିନଠାରୁ ଏ ତୀର୍ଥର ମହିମା ପୃଥିବୀରେ ବିଖ୍ୟାତ ହେଲା । ଏହାର ନାମ ପାପନାଶିନୀ ତୀର୍ଥ ବୋଲି ସବୁଲୋକେ ଜାଣିଲେ । ଅବର ଅବୋଲକରା, ଶୁଣିଲୁ ତ କଥାର ମଞ୍ଜି, ପଥ ବାହୁଯିବା ହୁଅ ସଜ ।

---

## ପୁରୁଷର ବିଶ୍ୱାସଘାତକ କଥା

କାନରମଣୀ କଥା କହିଲା ପରେ ସାମନ୍ତ ଏବଂ ଅବୋଲକରା ସେହି ପାପନାଶିନୀ ତୀର୍ଥରେ ସ୍ନାନ କରି ସେଠାରୁ ଚାଲିଗଲେ । ଯାଇ ଯାଇ ଅନେକ ଦେଶ, ଗ୍ରାମ ପାରହୋଇ ମୀନକେତନପୁର ନାମକ ଗୋଟିଏ ପାଟଣାରେ ପହଞ୍ଚିଲେ । ସେଠାକୁ ଗଲବେଳକୁ ଦିନ ଦୁଇପ୍ରହର ହେଲଣି । ଏବେ ବାଟ ଚାଲି ଚାଲି ହାଲିଆ ହୋଇଥିଲେ, ତେଣୁ ଅଉ ଯାଇ ନ ପାରି ସେହି ନଗର ପ୍ରାନ୍ତ ଦେବାଳୟରେ ବସା ପାଡ଼ିଲେ । ଜାଗା ଟି ଅତି ନିର୍ମଳ, ନିକଟରେ ଗୋଟିଏ ମନୋହର ପୁଷ୍କରଣୀ ଅଛି, ତାହା ଦେଖି ସାମନ୍ତ ଅବୋଲକରାକୁ ବୋଇଲେ—ତୁ ଚଞ୍ଚଳ ଯାଇ ସଜଦାପତ୍ର କାଣି ଅଣେ, ମୁଁ ସ୍ନାନ କରି ଚୂଲି ଲଗାଉଅଛି । ଅଜ ମୋତେ ବଡ଼ ଭୋକ ଲଗୁଅଛି । ଏତେବେଳେ ଅଉ କଛି ହଇରାଣ ନ କର ଚଞ୍ଚଳ ଚାଲିଆସ । ଏହା କହି ସେ ସ୍ନାନ କରିବାକୁ ଗଲେ । ଅବୋଲକରା ସଉଦା କଣିବାକୁ ଚଲେ । ବଜାରରୁ ସଉଦାପତ୍ର କଣାକଣି କର ଫେରିଅସିଲା ବେଳକୁ ମନେ ମନେ ବିଚାରିଲା; ଏଠାରେ କେଜାଣି କଣ ଅଶ୍ଚର୍ଯ୍ୟ କଥା ଥିବ, ଅସେ ଟିକେ ବୁଲ-ବୁଲି କର ଦେଖେ । ଏମନ୍ତ ବିଚାର କର ବୁଲି ବୁଲି ଦେଖିଲା ଯେ ସାଧାରଣ ଜାଗାରେ ଗୋଟିଏ ପଥର ଘର ଅଛି, ସେହି ଘରର

ବାରଦାରେ ଗୋଟିଏ ପୁରୁଷର ଛବି ଲେଖା ଯାଇଅଛି । ତାର ଆଗରେ ଗୋଟିଏ ଅବଂଯୁବତୀ ସ୍ତ୍ରୀର ଛବି ଲେଖା ହୋଇଅଛି । ସେହି ଦୁହିଙ୍କ ମଧ୍ୟସ୍ଥାନରେ "ପୁରୁଷଜାତି ବଡ଼ ଅବିଶ୍ୱାସୀ, ଏହାଙ୍କୁ କେହି ବିଶ୍ୱାସ କର ନାହିଁ" ବୋଲି ଗୁଡ଼ିଏ ପାଞ୍ଚ ଭାଷାର ଅକ୍ଷରରେ ଲେଖା ହୋଇ ଗୃହପାଖରେ ଲମ୍ବାଲମ୍ବା ଟଙ୍ଗା ହୋଇଅଛି । ତାହା ଦେଖି ଅବୋଲକରା ସେ ସ୍ଥାନରେ ଥିବା ଲୋକଙ୍କୁ ତହିଁର କାରଣ ପଚାରିଲା । ସେମାନେ ଏମନ୍ତ କହିଲେ ହୋଇଅଛି, ତାହା କେହି କିଛି କହି ପାରିଲେ ନାହିଁ । ତେଣୁ ଅବୋଲକରା ମୁହଁଟି ଶୁଖାଇ ଦେଇ ସେଠାରୁ ଫେରିଲା । ସାମନ୍ତ ତାର ମୁହଁକୁ ଦେଖି ଜାଣିଲେ ଯେ, ଆଜି କୁଠେଇ କଣ ଦେଖିଲାଣି । ଏ ପ୍ରଭୁଖାଇର ପୁଅକୁ ସଙ୍ଗରେ ଆଣି ବଡ଼ ହଇରାଣ ହେବାକୁ ପଡ଼ିଲା । ସେ ଏମନ୍ତ ବିଚାରୁ ବିଚାରୁ ଅବୋଲକରା ବୋଇଲା—ଗୋସାଇଁ, ଆଜି ବିଚାରିଲେ କଣ ହେବ ? କହିବ ତ କୁହ, ନୋହିଲେ ମୋ ବଟ ମୋର, ତୁମ ବଟ ତୁମର । ସାମନ୍ତ ଭିତରେ ଭିତରେ ରାଗିଯାଇ ପଦାକୁ ହସିଲା ପରି ହୋଇ ବୋଇଲେ—କିରେ କଣ ଦେଖିଲୁ କି ? ଅବୋଲକରା ବୋଇଲା, ଏହି ସହର ନିକଟ ଧର୍ମଶାଳାର କାନ୍ଥରେ ଗୋଟିଏ ପୁରୁଷ ଏବଂ ଗୋଟିଏ ସ୍ତ୍ରୀର ଛବି ଅଙ୍କିତ ହୋଇ ସେ ଦୁହିଙ୍କ ମଧ୍ୟରେ ପୁରୁଷ ଜାତି ଅବିଶ୍ୱାସୀ ବୋଲି କାହିଁକି ଲେଖା ହୋଇଅଛି । ତହିଁର ମୂଳ କାରଣ ମୋତେ କହିଦିଅ । ସାମନ୍ତ ବୋଇଲେ—ସେ ତ ବଡ଼ ଅଦ୍ଭୁତ କଥା, କହିବାକୁ ଅନେକ ସମୟ ଲାଗିବ । ଆଜି ଅଜ ବେଳକାଳରେ କହି ପାରିବା ନାହିଁ । ରହ ସବୁ, ଖାଇ ସାରିଲେ କହିବି । ଏହା କହି ଧଡ଼ପଡ଼ ହୋଇ ମୁଠେ ଗୁଣ୍ଡିଲେ । ଖିଅପିଅ ସରିଲା ସାମନ୍ତ ବୋଇଲେ—ପଙ୍କା କମ୍ବଳ ପୋତ ଛଡା, ବସ ଅବୋଲକରା ଶୁଣୁ କଥା । ପୂର୍ବ

କାଲରେ ପର୍ଣ୍ଣାଦ ନାମରେ ଜଣେ ଋଷି ଥିଲେ । ସେ ନାସିକ-ତ୍ର୍ୟମ୍ବକ ତୀର୍ଥରେ ବସି ତପ କଲେ । ତାଙ୍କର ସେ ତପସ୍ୟା ପ୍ରଭାବରେ ପବନ ସ୍ତବ୍ଧ ହୋଇଗଲା, ଅଗ୍ନି ଜଳଲା ନାହିଁ, ଭୂମି କମ୍ପିଲା, ନିରନ୍ତର ଆକାଶରୁ ଉଲ୍‌କାପାତ ହେଲା । ତାହା ଦେଖି ଦେବଗଣ ଯାଇ ଇନ୍ଦ୍ରଙ୍କୁ ସେ କଥା କହିଲେ । ଇନ୍ଦ୍ର ଭୟ ପାଇ ତାଙ୍କ ତପସ୍ୟା ଭଙ୍ଗ କରିବା ସକାଶେ ଜାଲପଦ୍ମୀ ନାମକ ଅପ୍‌ସରାକୁ ଡକାଇ କହିଲେ, "ତୁ ସତ୍ୱର ମର୍ତ୍ତ୍ୟପୁରକୁ ଯାଇ ପର୍ଣ୍ଣାଦ ଋଷିର ତପସ୍ୟା ନଷ୍ଟ କର ।" ଇନ୍ଦ୍ରଙ୍କ ଆଜ୍ଞାରେ ସେ ଅପ୍‌ସରା ସ୍ୱର୍ଗରୁ ଆସି ସେହି ପର୍ଣ୍ଣାଦ ଋଷିଙ୍କର ତପସ୍ଥାନରେ କୁଟୀର ନିର୍ମାଣ କରି ତାଙ୍କ ଛିଦ୍ର ଜଗି ରହିଲା । ଦଇବ ଯୋଗରୁ ଦିନେ ସେ ଋଷିଙ୍କର ଦୃଷ୍ଟି ସେହି ଅପ୍‌ସରା ଉପରେ ପଡ଼ିଲା । ତାର ଅଦ୍ଭୁତ ନବଯୌବନ ଏବଂ ମନୋହର ରୂପ ଦେଖି ସେ ଋଷି ଅଧୈର୍ଯ୍ୟ ହୋଇ ତାକୁ କହିଲେ—ତୁମ୍ଭର ଘର କେଉଁଠାରେ, ତୁମ୍ଭେ କାହାର ଝିଅ, ନାମ କଣ ? କାହିଁକି ଏଠାରେ ଏକା ହୋଇ ରହିଅଛ ? ଅପସରା ବୋଇଲା—ମୋହର ନାମ ଜାଲପଦ୍ମୀ, ମୁଁ ସ୍ୱର୍ଗର ଅପ୍‌ସରା ଅଟେ । ଏହି ତୀର୍ଥରେ ସ୍ନାନ କରିବାକୁ ଆସିଥିଲି । ଏ ସ୍ଥାନକୁ ଅତି ମନୋହର ଦେଖି ଏଠାରେ କେତେଦିନ ପାଇଁ ରହିଅଛି । ଋଷି ବୋଇଲେ—ତୁ ଯେବେ ସ୍ୱର୍ଗର ଅପ୍‌ସରା, ତା ହେଲେ ଭଲ ହେଲା—ମୋ ସହିତ ବିହାର କରି ମୋର କାମବେଦନା ଛଡ଼ାଇ ଦିଅ । ଏହା ଶୁଣି ଅପ୍‌ସରା ମୃଦୁକୁ ହସାଦେଇ କହିଲା—ତୁମ୍ଭେ ପରା ବ୍ରହ୍ମଋଷି । ପୁଣି ତ ଊର୍ଦ୍ଧ୍ୱରେତା ହୋଇ ତପ କରୁଅଛ, ଏପରି ଅନୀତ କଥା କାହିଁକି କହିଲ ? ଋଷି ବୋଇଲେ—

ସନ୍ମାର୍ଗେ ତବଦାସ୍ତେ ପ୍ରଭବତି ପୁରୁଷସ୍ତାବ ଦେବେନ୍ଦ୍ରିୟାଣାଂ,
ଲଜ୍ଜାଂ ତାବଦ୍ ବିଧୋଧତ୍ତେ ବିନୟମପି ସଦାଲମ୍ବତେ ତାବଦେବ ।
ଭ୍ରୂଚାପାକୃଷ୍ଟମୁକ୍ତଃ ଶ୍ରବଣପଥଗତା ନୀଳପକ୍ଷ୍ମାଣ ଏତେ ।

ଯାବଲ୍ଲୀଳାବତୀନାଂ ନତ ହୃଦ ଧୂମ୍ରମ୍ ଦୃଷ୍ଟିବାଣାଃ ପତନ୍ତି । ଯେତେ ଛାଳ ପର୍ଯ୍ୟନ୍ତ ନାରୀମାନଙ୍କର ଦୃଷ୍ଟିବାଣ ହୃଦୟରେ ପଡ଼ ନାହିଁ ସେତେବେଳ ପର୍ଯ୍ୟନ୍ତ ପୁରୁଷମାନେ ଜପତପ କର ସାଧୁ ମାର୍ଗରେ ଥିବେ । ବଳାସିନୀ ନାରୀମାନଙ୍କର ଭ୍ରୂଲତା ଧନୁରୁ ବାହାର ହୋଇ କଟାକ୍ଷ ବାଣ ପଡ଼ିବା ମାତ୍ରେ ତାହା ସବୁ କୁଆଡ଼େ ଛାଡ଼ି ପଳାଇବ । ଏଣୁ ତୁ ମୋତେ ଆଉ କଛି ନ କହି ଶୀଘ୍ର ସୁରତ ଦାନକର ମୋର ଜୀବନ ରକ୍ଷା କର । ଏହା ଶୁଣି ସେ ଅପ୍ସରା ତାର ମନୋରଥ ସିଦ୍ଧ ହେଲା ବୋଲି ବଗ୍ଭର ସେହି ଋଷିଙ୍କ କଥାରେ ରାଜି ହେଲା । ଋଷି ସେହି ଦନଠାରୁ ଜପତପ ଛାଡ଼ି ସେହି ଅପ୍ସରା ସଙ୍ଗେ ମାତିଲେ । ଅଠ ଦଅମାସ ଗଲା ପରେ ଋଷି ବହୁତ ନନ୍ଦା କର ସେ ଅପ୍ସରାକୁ ଛାଡ଼ି ପୁଣି ତପ କରିବାକୁ ହିମାଳୟକୁ ଗ୍ଭଲିଗଲେ । ଅପ୍ସରା ସେ ଋଷିଙ୍କ ଔରସରେ ଗର୍ଭବତୀ ହୋଇଥିଲା । ସେ ଗୋଟିଏ କନ୍ୟା ଜନ୍ମକର ସେ କନ୍ୟାଟିକୁ କାଠ ମଞ୍ଜୁଷାରେ ପୂରାଇ ଗୋଦାବରୀ ନଦୀରେ ଭସାଇ ଦେଇ ସ୍ୱର୍ଗକୁ ଗ୍ଭଲିଗଲା । ସେ କାଠ ମଞ୍ଜୁଷାଟି ନଦୀସ୍ରୋତରେ ଭାସିଯାଇ ଲବଣ ସମୁଦ୍ରରେ ପଡ଼ି ଭାସୁଥାଏ । ଏଣେ ଏହି ଦେଶରେ ଅଦକନ୍ଦ ନାମକ ଜଣେ ସୌଦାଗର ବୋଇତରେ ମାଲମତା ବୋଝେଇ କର ଦ୍ୱୀପାନ୍ତରକୁ ଯାଉଥିଲା । ସେହି ସୌଦାଗରର ଯୋଡ଼ାଏ ପୁଅ ଥାନ୍ତି । ଝିଅଟିଏ ନ ଥିବାରୁ ସେ ସବୁବେଳେ ଝିଅଟିଏ ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥାଏ । ଦଇବରେ ସେ କାଠ ମଞ୍ଜୁଷାଟି ସମୁଦ୍ର ଜଳରେ ଭାସି ଭାସି ଯାଇ ତାର ବୋଇତ ଆଗରେ ଦେଖାଗଲା । ଏ କଣ ଭାସୁଅଛି ବୋଲି ସୌଦାଗର ମାଝିମାନଙ୍କୁ କହି ଜାଲଦ୍ୱାରା ସେହି ମଞ୍ଜୁଷାଟିକୁ ଟାଣିନେଇ ଫିଟାଇ ଦେଖିଲା ବେଳକୁ ତହିଁରେ ଗୋଟିଏ ଅପୂର୍ବ ସୁନ୍ଦରୀ କନ୍ୟା ଅଛି । ତାକୁ ଦେଖି ମନେ ମନେ ବଗ୍ଭରିଲା, ମୁଁ କନ୍ୟାଟିଏ ପାଇଁ ସବୁବେଳେ

ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିବାରୁ ପ୍ରଭୁ ଦୟାକରି ମୋତେ ଏ କନ୍ୟାଟି ଦେଇଅଛନ୍ତି । ତା ନୋହିଲେ ମହାସମୁଦ୍ର ମଧ୍ୟରେ ଏ କାହୁଁ ମିଳନ୍ତା ? ଅଥବା କେହି ଯେବେ ଭସାଇ ଦେଇଥାନ୍ତା ତେବେ ଏ ଦଶ ପନ୍ଦର ଦିନର ପିଲା ଆହାର ନ ଖାଇ କିପରି ବଞ୍ଚିଥାନ୍ତା ? ଏଣୁ ଈଶ୍ୱର ନିଶ୍ଚୟ ଦୟାକରି ଦେଇ ଅଛନ୍ତି । ଏମନ୍ତ ବିଗ୍ଭର କରି ସେ କନ୍ୟାକୁ ଅତି ଯତ୍ନରେ ପାଳିଲା । କେତେ ଦିନପରେ ତାର କାରବାର ଓ ବଣିଜ ଦ୍ୱୀପାନ୍ତରର ସଂବାରୁ ଅନେକ ଧନ ଲାଭକରି ଦେଶକୁ ବାହୁଡ଼ିଲା । ଘରକୁ ଆସି ସହଧର୍ମିଣୀଙ୍କି ସେ ଅପୂର୍ବ ସୁନ୍ଦରୀ କନ୍ୟାଟି ଦେଇ ସୌଦାଗର କହିଲା—ଏ ପିଲାଟିକୁ ମୁଁ ସମୁଦ୍ର ଭିତରୁ ପାଇଲି । ଆମ୍ଭର ଝିଅ ନ ଥିବାରୁ ଈଶ୍ୱର ଦୟା କରି ଏ ପଦାର୍ଥ ଆମ୍ଭକୁ ଦେଇ ଅଛନ୍ତି । ତୁ ଏହାକୁ ଜନ୍ମକଲା ଝିଅଠାରୁ ଅଧିକରେ ପାଳିବୁ । ଏହା ଯୋଗରେ ଆମ୍ଭର ସାତପୁରୁଷ ଉଦ୍ଧାର ହେବେ । ଏହା କହି ତା କୋଳରେ ସେ କନ୍ୟାକୁ ସମର୍ପଣ କଲା । ସେ କନ୍ୟାର ଦେହକାନ୍ତି ସ୍ୱର୍ଣ୍ଣ ପରି ଝଟକୁ ଥିବାରୁ ତାର ନାମ ସୋନାମଣି ବୋଲି ଦେଇ ଥିଲେ । ଶୁକ୍ଳପକ୍ଷରେ ଚନ୍ଦ୍ରକଳା ବଢ଼ିଲା ପରି ସେ କନ୍ୟା ଦିନକୁ ଦିନ ବଢ଼ିଲା । ସଂସାରରେ ଯେତେ ସୁଗୁଣ ଅଛି ତାହା ସବୁ ତାଠାରେ ପୂର୍ଣ୍ଣ ରହିଥାଏ । କ୍ରମେ କ୍ରମେ ସେ ପିଲାକୁ ଦଶ ବାରବର୍ଷ ହୋଇ ଯିବାରୁ ସେ ନିଜର ଚତୁର ଗୁଣରେ ସାଇ ପଡ଼ିଶା, ବନ୍ଧୁ, ମିତ୍ର ଏବଂ ସଈ ସଙ୍ଗାତୁଣୀମାନଙ୍କର ମନକୁ ମୋହି ନେଲା । ସେ କନ୍ୟାର ରୂପ ଓ ଗୁଣ ଦେଖି ସବୁଲୋକ ତାକୁ ପ୍ରଶଂସା କରୁଥାନ୍ତି । କେତେ ଦିନ ପରେ ସେ ଯୁବତୀ ହେବାରୁ ତାକୁ ବିଭା ଦେବାପାଇଁ ସୌଦାଗର ଗୃହଅଟ୍ଟେ ବରପାତ୍ର ଖୋଜାଇଲା । ନାନା ଦେଶରୁ ଅନେକ ସୌଦାଗର ପୁଅ ଆସି ତାକୁ ବାହା ହେବାପାଇଁ ମାଗୁଥାନ୍ତି, କିନ୍ତୁ ଅବୋଲକର ସୌଦାଗର

ସେ କନ୍ୟାର ଅନୁରୂପ ବର ନ ଦେଖିବାରୁ ତାହାଙ୍କୁ ହେଲେ ଦେଇ ନ ଥାଏ । ଏହାର ବର୍ଷେ ଶତ୍ରେ ଶୁଣିଥିବାରୁ ଧନେ ସାଧବ ଶ୍ରୀ ସୌଦାଗରଙ୍କୁ କହିଲେ—ଝିଅ ତେର ବର୍ଷ ହେଲା ଯୁବତୀ ହୋଇ ଘରେ ରହିଲା । ତୁମ୍ଭେ କ ଜାଣିଲ ମଧ୍ୟ କାହିଁକି ବସି ରହିଅଛ ? ଲୋକେ ତ କହନ୍ତି, ଝିଅ ଘିଅ ସାଇତି ରଖିବା ନାହିଁ; ରହିଲେ ତହିଁରୁ ଦୁର୍ବାସନା ବାହାରେ । ଏଣୁ ଶୀଘ୍ର ଝିଅକୁ ବାହା ଦେବା ପାଇଁ ବର ଖୋଜ ଆସ । ଏହା ଶୁଣି ଅଦାରମ ବଡ଼ ଉଦ୍‌ବେଗ ହୋଇ ବରପାଣ୍ଡ ଖୋଜାଇଲା । ଦଇବର ଘଟଣା ଦେଖ ଯେ, ଦେଶଠାରୁ ପନ୍ଦର ଦିନ ବାଟ ଦୂରରେ ମଦନରାଜ ନାମକ ଅଳ ଜଣେ ଧନୀ ସୌଦାଗର ଥାଏ ଯେ, ତାଙ୍କୁ ସମସ୍ତେ ଜାଣନ୍ତି । ପ୍ରତି ମାସରେ ତାର ନୋଉକା ଗୁଲୁଥାଏ । ଘରେ ଅକଳନ ଧନ, ତାହାଠାରେ ହୀରା ନୀଳା ଇତ୍ୟାଦି ପାଣି ଦ୍ରବ୍ୟ ଯେତେ ଥାଏ ରଜାଘରେ ନ ଥିବ । ତାର ପୁଅ ଗୋଟିଏ । ଝିଅ ଝିଅଣିଆ, ଭଉଣୀଆ କୋଳବାର କେଉଁଠି ଆଉ କେହି ନାହିଁ । ପୁଅଟିର ନାମ ବିଦ୍ୟାଧର । ସେ ବାପ ମାଆର ଗୋଟିଏ ପୁଅ ହେବାରୁ ତାଙ୍କ ବଡ଼ ଗେହ୍ଲାପୁଅ ହୋଇ ଥାଏ । ଶାସ୍ତ୍ରରେ ତ ଲେଖିଅଛି—"ଲାଳନେ ବହବୋ ଦୋଷାଃ ତାଡ଼ନେ ବହବୋ ଗୁଣାଃ । ତସ୍ମାତ୍ ପୁତ୍ରଞ୍ଚ ଶିଷ୍ୟଞ୍ଚ ତାଡ଼ୟେତ୍ ନ ତୁ ଲାଳୟେତ୍ ।" ଲାଳନାରେ ବହୁତ ଦୋଷ, ତାଡ଼ନାରେ ବହୁତ ଗୁଣ ଅଛି । ଏଣୁ ପୁଅ ହେଉ ବା ଶିଷ୍ୟ ହେଉ ତାହାକୁ ତାଡ଼ନା କରୁଥିବ ସିନା ଲାଳନ କରିବ ନାହିଁ । ମଦନରାଜ ସୌଦାଗରର ଗୋଟିଏ ପୁଅ ବୋଲି ତାଙ୍କୁ ଅତି ଲାଳନ କରିବାରୁ ପୁଅଟି କ୍ରମେ କ୍ରମେ ଅକର୍ମୀ ହୋଇ ବେଶ୍ୟାସଙ୍ଗ, ଜୁଆଖେଳ ପ୍ରଭୃତି ବ୍ୟସନରେ ବାପ ଘରେ ଥିବା ଧନଯାକ ନଷ୍ଟ କରିବାକୁ ଲାଗିଲା । ବାପ ବୁଢ଼ା ହୋଇ ଅଉ ଉପାର୍ଜନ କରି ପାରିଲା ନାହିଁ । ପୁଅ ଅନ୍ୟାୟରେ

ବ୍ୟସ୍ତ କରୁ କରୁ ଧନ ଶେଷହୋଇ ଘରଟି ଭିତର ପୋଲ୍ଲା ହୋଇଗଲା । ବାପର ଅଜଣାରେ ଅନ୍ୟ ମହାଜନମାନଙ୍କଠାରୁ ପୁଅ ତାର ଦଶ ପନ୍ଦର ହଜାର ଟଙ୍କା ଧାରଥାଏ । ମାତ୍ର ଲୋକେ ଜାଣିବାକୁ ବଡ଼ ଧନୀଘର ବୋଲି ପଦାକୁ ନାମଟା ମାତ୍ର ଥାଏ ସିନା, ଭିତରେ ହାଣ୍ଡି ଖାଇବା କଇଥ ପରି ଫମ୍ପା ହୋଇ ଯାଇଥିଲା । ଏହି ସମୟରେ ବୁଢ଼ା ମରିଗଲା । ପୁଅକୁ ମହାଜନମାନେ ଧରିବାରୁ ସେ ଘର ଛାଡ଼ି ଲୁଚିକରି ବିଦେଶକୁ ପଳାଇଗଲା । ଯାଇ ଯାଇ ଦଇବରେ ଏହି ଦେଶକୁ ଆସି ଅନ୍ଧକନ୍ଦ ସୌଦାଗର ଦୁଆରେ ପହଞ୍ଚିଲା । ଅନ୍ଧକନ୍ଦ ସୌଦାଗର ତାର ବାପକୁ ଭଲରୂପେ ଜାଣେ, ସେ ତାର ପୁତ୍ରବୋଲି ପରିଚୟ ଦେବାରୁ ତାକୁ ବଡ଼ ଆଦର କରି ରଖିଲା । ସେ ଆଉ ଜାଣେ ନାହିଁ ଯେ ଏଇଟା ବ୍ୟସନରେ ପଡ଼ି ଧନ ଦ୍ରବ୍ୟ ସବୁ ହରାଇ ଦେଲାଣି ବୋଲି । ପୂର୍ବେ ଜାଣିଥିବା ପ୍ରକାରେ ଏ ବଡ ଧନୀ ସୌଦାଗର ପୁଅବୋଲି ତାକୁ ନିଜର ଝିଅକୁ ବାହା କରାଇବା ପାଇଁ ନିଷ୍ଟୟ କଲା । ଲୋକେ ତ କହନ୍ତି—ଯିଏ ଯାହାର ହାଣ୍ଡିରେ ଚାଉଳ ପକାଇଥିବ ସେ ତାହା ଖାଇବ । ଆହୁରି ମଧ୍ୟ କହନ୍ତି—ବାପ ମାଆ ଅନ୍ଧ, ପ୍ରଜାପତି ସମ୍ବନ୍ଧ । ଶାସ୍ତ୍ର ଲେଖିଅଛି—ପୂର୍ବଜନ୍ମନି ଯା ବିଦ୍ୟା ପୂର୍ବଜନ୍ମନି ଯଦ୍ଧନଂ । ପୂର୍ବଜନ୍ମନି ଯା କନ୍ୟା ଅଗ୍ରେ ଧାବତି ଧାବତି । ପୂର୍ବଜନ୍ମରେ ବିଦ୍ୟା, ଯେଉଁ ଧନ, ଯେଉଁ କନ୍ୟା ଅର୍ଜିଥିବ ସେ ତାହାର ଅବଶ୍ୟ ଆଗେ ଧାଇଁଥିବ । ଅନ୍ଧକନ୍ଦ ସୌଦାଗର ସୌଦାମିନୀ କନ୍ୟାକୁ ପାଇ କେତେ ଯତ୍ନରେ ପ୍ରାଣରୁ ଅଧିକ କରି ପାଳିଥିଲା । କେତେ କେତେ ଧନୀ ସୌଦାଗର ପୁଅ ସେ କନ୍ୟାକୁ ବାହା ହେବାପାଇଁ ଆସିଥିଲେ ଯେ ମନ ନ ମାନିବାରୁ ବଡ଼ ଧନୀଘରେ ଦେବା ବୋଲି ରଖିଥିଲା । ଏତେ ଖୋଜିଲା କଣ ହେବ ଶେଷକୁ ଦଇବ ଘଟଣାରେ ପଡ଼ି ସେହି ମଦନରାଜ

ସୌଦାଗରର ପୁଅ ବିଦ୍ୟାଧରକୁ ବଡ଼ ଧନୀଘର ପୁଅ ବୋଲି ଜାଣି ବିଭା କରାଇଦେଲା । ସେ ସମୟକୁ ବିଦ୍ୟାଧର ତ ଜୁଆଖେଳ ଏବଂ ବେଶ୍ୟା ସଂସର୍ଗରେ ପଡ଼ି ଧନଦ୍ରବ୍ୟ ଯାକ ହରାଇ ଦେଇ ମହାଜନ ପରିଶୋଧ କରି ନ ପାରିବାରୁ ଘରଦ୍ୱାର ଛାଡ଼ି ଛତରାଙ୍କ ପରି ବୁଲୁଥିଲା । ସେ ସୌଦାମିନୀ କନ୍ୟାକୁ ପାଇ ଶ୍ୱଶୁର ଘରେ ଦିନାକେତେ ରହି ଭାରି ମଜାରେ ସମୟ କଟାଇଲା । ଜ୍ୱାଇଁଟେ ଶ୍ୱଶୁରଘରେ କେତେଦିନ ବା ରହିବ । ଦୁଇ ତିନିମାସ ଗଲା ପରେ ଦେଶକୁ ଯିବ ବୋଲି କହିବାରୁ ତାର ଶ୍ୱଶୁର ଅବିକନ୍ଦ ସୌଦାଗର ଝିଅକୁ ଅଷ୍ଟ ଅଳଙ୍କାରରେ ମଣ୍ଡିତ କରି ଅନେକ ଧନ ଯଉତୁକ ଦେବାପାଇଁ ଯୋଗାଡ଼ କଲା । ତାହା ଦେଖି ବିଦ୍ୟାଧର କହିଲା— କଂସା ପିତ୍ତଳ ପେଡ଼ି ପୁଟିକା ଏଥିରୁ ଗୁଡ଼େ ସମ୍ଭାର ଦେବାକୁ ଯୋଗାଡ଼ କରୁଅଛ ଯେ, ମୁଁ ଏ ଗୁଡ଼ାକ ନେଇ ପାରିବି ନାହିଁ । ମୋର ଘର ବହୁତ ଦୂର, ତେଣୁ ଏ ସବୁ ଜିନିଷ ନେବାକୁ ବଡ଼ ଅଡୁଆ ହେବ । ଯାହା ଦେବାକୁ ଅଛି ଟଙ୍କା ସୁନା ଆକାରେ ମୋତେ ଦେଇ ଦିଅ । ମୁଁ ସେଠାରେ ଜିନିଷ ପତ୍ର କିଣିଦ କରି ତୁମ୍ଭେ ଦେଇଅଛ ବୋଲି ଲୋକଙ୍କୁ ଦେଖାଇ ଦେବି । ଏହା ଶୁଣି ଅବିକନ୍ଦ ସୌଦାଗର ସତ ବିଶ୍ୱାସ କରି ତାକୁ ନଗଦ ଦୁଇହଜାର ଟଙ୍କା ଦେଲା । ଝିଅକୁ ଅନେକ ଅଳଙ୍କାର ପିନ୍ଧାଇ ସେ ଦୁହିଙ୍କୁ ବିଦାକରି ଦେଲା । ବିଦ୍ୟାଧର ସେ ଟଙ୍କା ଆଉ କନ୍ୟା ନେଇ ଚାଲିଗଲା । ଯାଇ ଯାଇ ଦୁଇ ତିନି ଦିନର ବାଟ ଚାଲିପରେ ଗୋଟିଏ ବଣ ବାଟ ପଡ଼ିଲା । ସେଠାରେ ବିଦ୍ୟାଧର ସୌଦାମିନୀଙ୍କୁ ଗୁହାରି କହିଲା—ପ୍ରିୟେ, ଦେଖୁଛ ତ ଏ ବଣବାଟ କିପରି ଦୁର୍ଗମ, ତୁମେ ଅଳଙ୍କାର ଗୁଡ଼ାକ ପିନ୍ଧିଥିବା ଦେଖିଲେ ଚୋର ଗଣ୍ଠିପାନେ ଛଡ଼ାଇ ନେବେ; ତେଣୁ ସବୁ ଅଳଙ୍କାରଯାକ ଦେହରୁ କାଢ଼ି ମୋତେ ଦେଇ ପକାଅ । ମୁଁ ଗୁଞ୍ଜୁଲା ଭିତରେ ବାନ୍ଧି ରଖିଥିବି, ତୁମ୍ଭେ

ଘରକୁ ଗଲେ ପିନ୍ଧିବ । ଏହା ଶୁଣି ସେ କନ୍ୟା ସତ ବିଶ୍ବସି ଦେହରୁ ସବୁ ଅଳଙ୍କାରଯାକ କାଢ଼ି ତାକୁ ଦେଇ ପଠାଇଲା । ତହିଁପରେ ବିଦ୍ୟାଧର ମନେ ମନେ ପାଞ୍ଚିଲା, ମୁଁ ମହାଜନମାନଙ୍କର ଅନେକ ଟଙ୍କା ଧାରିଅଛି । ସେମାନେ ଦେଖିଲାମାତ୍ରେ ମୋତେ ନାନା ହଲପଟା କରିବେ । ଏ ମାଇପିଟାକୁ ନେଇଥିବି ବୋଇଲେ କେଉଁଠି ଘରକୁ ଯିବାକୁ ପଡ଼ିବ । ତେଣୁ ଏହି ବଣଭିତରେ ଏହାକୁ କୂଅକୁ ପେଲିଦେଇ ମୋ ବାଟେ ମୁଁ ଚାଲିଗଲେ ନଗଦ ଦୁଇ-ହଜାର ଟଙ୍କା ଅଛି, ଏସବୁ ଅଳଙ୍କାର ଯାକ ବିକିଲେ ଅଢ଼େଇ ପାଞ୍ଚହଜାର ଟଙ୍କା ପାଇବି । ଏଥର ଖୁବ ମଜାରେ କାଳ କଟାଇବି । ଏମନ୍ତ ବିଚାର କରି ଆଗରେ ଗୋଟିଏ କୂଅ ଦେଖି ସୌଦାମିନୀଙ୍କୁ କହିଲା, ପ୍ରିୟେ ! ଦେଖିଲ ଏ କୂଅଟି କେଡ଼େ ସୁନ୍ଦର ପଥର ବନ୍ଧା ହୋଇଅଛି । ତାହା ଶୁଣି ସୌଦାମିନୀ କି ଅପୂର୍ବ କୂଅ ହୋଇଥିବ ବୋଲି ଚାହିଁ ଦେଲାବେଳକୁ ତାକୁ ପଛପାଖରୁ ଧକ୍କେ ମାରି ପେଲିଦେଲା ଯେ ସେ କୂଅଭିତରେ ଭୁଷ୍‌କିନା ପଡ଼ିଲା । ମାତ୍ର ଖରାଦିନ ହେବାରୁ ସେ କୂଅରେ ବେଶି ପାଣି ନ ଥିଲା, ଅଣ୍ଟାଏ ପାଣି ମାତ୍ର ଥିଲା । ସୌଦାମିନୀ ତହିଁରେ ପଡ଼ିବା-ବେଳେ ତାର କିଛିହେଲେ ଆଘାତ ହୋଇ ନାହିଁ । କିନ୍ତୁ ପ୍ରାଣ ବିକଳରେ ସେ ବଡ଼ ଚିତ୍କାର କରି ଚେଁ କରୁଥିଲା । ଯେଉଁ ଲୋକ ଘର ପୋଡ଼ି ଦେଇଥାଏ ସେ କଣ ଅଗ୍ନି ଥରେ ଲିଭାଉଁଥାଏ କି ? ବିଦ୍ୟାଧର ତା ଡାକ ଅବା କାହିଁକି ଶୁଣିବ । ଧନ ବୁଜୁଳାକୁ ଧରି ତା ବାଟେ ଚାଲିଗଲା । ସୌଦାମିନୀ ସକାଳୁ କୂଅରେ ପଡ଼ିଲା ସେ ବେଳ ଦିନଦ୍ୱିପ୍ରହର ହେଲା ସେଠିକୁ କେହି ହେଲେ ପାଣି ନେବାପାଇଁ ଆସିନାହାନ୍ତି । ଦିନଦ୍ୱିପ୍ରହର ଗଡ଼ିଗଲା ପରେ କେତେଜଣ ବଳଦିଆ ମହାଜନ ଆସି ସେହି ନିକଟରେ ବସା ପାଡ଼ିଲେ । ସେମାନେ ରୋଷେଇ କରିବେ ବୋଲି ପାଣି

ଅଟିରାଙ୍କୁ ଯାଇ ଦେଖିଲେ ଯେ, କୂଅ ଭିତରେ ମାଇପି ଜଣେ କାନ୍ଦୁଅଛି । ତାଙ୍କ ମଧ୍ୟରୁ ଗୃହର ପାଞ୍ଚଜଣ ଲାଗି ତାକୁ ଉପରକୁ କାଢ଼ି ଆଣିଲେ । ଆଉ କେତେ ଜଣ ନିଆଁ ଜଳାଇ ସେକ ପକାଇଲେ । ସୌଦାମିନୀ ଟିକଏ ଅଶ୍ୱସ୍ତ ହୋଇ ସେମାନଙ୍କୁ କହିଲା—ଆମେ ମାଇପୀ ତିନି ଗୃହଜଣ ଏଆଡ଼େ ଯାଉଥିଲୁ । ମୁଁ ପାଣି ପିଇଲେ କାଳୁ କ ତୃଷ୍ଣାରେ ଜଳ ଖୋସିଲ୍ଲା ସେ କୂଅରେ ପଡ଼ିଗଲି । ମୋ ସଙ୍ଗ ମାଇପେ ମୋତେ କାଢ଼ି ନ ପାରି ପଳାଇ ଗଲେ । ଏବେ ମୋ କପାଳକୁ ତୁମ୍ଭେମାନେ କୁଅକୁ ଆସି ମୋର ଜୀବ ରକ୍ଷା କଲ । ମୋତେ ନେଇ ମୋ ବାପଘରେ ଛାଡ଼ିଦିଅନ୍ତ ବୋଇଲେ ତୁମ୍ଭର ବହୁତ ଧର୍ମ ହୁଅନ୍ତା । ଏତେ ବେଳ ବାପଘର ଠିକଣା ତାଙ୍କୁ କହିଦେଲା । କଳଦଅମାନେ କେତେଥର ବେପାର କରି ତାର ବାପକୁ ଚିହ୍ନିଥିଲେ । ସେ ନାମ ଶୁଣିବା ମାତ୍ରେ ତାକୁ ବହୁତ ଯତ୍ନରେ ନେଇ ତାର ପିତାଘରେ ଛାଡ଼ିଦେଲେ । କନ୍ୟାର ଏ ଦୁର୍ଦ୍ଦଶା ଦେଖି ପିତାମାତା ଛାତି କୁଟି ହୋଇ କାରଣ ପଚାରିବାରୁ ସେ କହିଲା—ଆମେ ଗୃହସ୍ଥ ଭାର୍ଯ୍ୟା ଦୁହେଁ ଯାଉ ଯାଉ ବଣ ମଝିରେ ଚୋର ଛଣ୍ଡମାନେ ଆସି ମୋର ସ୍ୱାମୀଙ୍କୁ ବାନ୍ଧି ପକାଇଲେ । ମୋର ଅଳଙ୍କାରଯାକ ଛଡ଼ାଇ ନେଇ ମୋତେ କୂଅକୁ ଠେଲିଦେଲେ । ତାଙ୍କୁ ତ ବାନ୍ଧିଥିଲେ, ମାଇଲେ କି ରଖିଲେ, କି କୁଆଡ଼େ ନେଲେ ମୁଁ କୂଅ ଭିତରେ ପଡ଼ିଥିଲି । ଭାଗ୍ୟବଳକୁ କଳଦଅମାନେ ଆସି ମୋତେ କୂଅ ଭିତରୁ କାଢ଼ି ଆଣିଲେ । ମୁଁ ତାଙ୍କୁ ବାପଘର କହିବାରୁ ଏଠାରେ ଆଣି ଛାଡ଼ିଦେଲେ । ଏହା ଶୁଣି ପିତାମାତା ବଡ ଦୁଃଖିତ ହୋଇ ତାକୁ ପୂର୍ବପରି ପାଳି ରଖିଲେ । ଏହିପରି ବର୍ଷେ ଖଣ୍ଡେ ଗଲା । ଦିନେ ଓଦୟାଧର ପେଡ଼ି ଠାକା ଆଉ ଅଳଙ୍କାରଯାକ ନେଇଥିବା ଖୁବ୍ ମଜାକର ଜୁଆଖେଳ ବେଶ୍ୟାଘରେ ଦେଇ ବର୍ଷେ ପୂରିଲା

ବେଳକୁ ସବୁ ଧନଯାକ ସାରିଦେଲା । ପାଠ ତ ଛଡ଼ିଥିଲା—ସର୍ବଶୂନ୍ୟ ଦାରିଦ୍ର୍ୟତା । ଦରିଦ୍ର ଲୋକଙ୍କୁ ଗ୍ରହଅଢ଼ ଶୂନ୍ୟ ଦିଶେ । ସେ ତ ବାଧିରେ ବେଶ୍ୟାସକ୍ତ, ପୁଣି ଜୁଆଡ଼ିଆ । ଧନ ନ ଥିଲେ ତାର କ୍ଷଣେ ଚଳିବ ନାହିଁ । ଚୋରି କରୁ ଅବା କାହାର ମୁଣ୍ଡ ପିଟୁ, ଯେ କୌଣସି ପ୍ରକାରେ ପଇସା ନ ପାଇଲେ ନ ଚଳେ । ତେଣୁ ମନେ ମନେ ବିଚାରିଲା—ଯାଉଚି ଅଡୁଥରେ ଶ୍ୱଶୁର ଘରକୁ ଯିବି । ମୁଁ ତାର ଝିଅକୁ କୂଅକୁ ପେଲିଦେଇ ମାରିଦେଇଥିବାର ସେ ତ ଜାଣନ୍ତି ନାହିଁ, ମୁଁ ଯାଇ ତାଙ୍କୁ କହିବି ତୁମ୍ଭ ଝିଅର ଗୋଟିଏ ପୁଅ ହୋଇଅଛି । ସେ ଏହା ଶୁଣିଲେ ଆନନ୍ଦ ମନରେ ନାତି ପାଇଁ ଅବଶ୍ୟ ଅଳଙ୍କାର ଦେବେ । ଝିଅ ପାଇଁ କିଛି ଦେବେ, ମୋତେ ମଧ କିଛି ଦେବେ । ସେ ସବୁ ଦ୍ରବ୍ୟଯାକ ପାଇଲେ ମୋର ଆଉ କିଛିଦିନ ଆନନ୍ଦରେ ଚାଲିଯିବ । ଏମନ୍ତ ବିଚାରି କରି ପୁଣି ଯାଇଁ ଶ୍ୱଶୁରଘର ଦୁଆରେ ପହଞ୍ଚିଲା । ଏ ଗଲା ବେଳକୁ ଶାଶୁ ଶ୍ୱଶୁର ଦୁହେଁ କୁଆଡ଼େ ଭୋଜି ଖାଇବାକୁ ଯାଇଥିଲେ । କେବଳ ସୌଦାମିନୀ ଏକୁଟିଆ ଘରେ ଥିଲା । ଏ ଅଣ୍ଡିରି ପୁଅ ଯାଇ ଦୁଆରେ ଡାକିବାରୁ ସୌଦାମିନୀ ଆସି ଦୁଆର ଫିଟାଇ ଦେଇ ସେଠାରେ ଠିଆ ହେଲା । ତାକୁ ଦେଖିବାମାତ୍ରେ ଏହାର ତାଳୁ ରକ୍ତ ଏକବାରେ ଭଲପାକୁ ବୋଲି ଖସି ପଡ଼ିଲା । କଣ କରିବ, କୁଆଡ଼େ ଯିବ, କେଡ଼େ ବିପଦରେ ପଡ଼ିଲି ବୋଲି ଭାବି ଭାବି ଜଳକା ପରି ଚାହିଁ ରହିଲା । ନିଜ ସ୍ୱାମୀର ଏ ଅବସ୍ଥା ଦେଖି ସୌଦାମିନୀ ଧୈର୍ଯ୍ୟ ଦେଇ ଅତି କୋମଳରେ ତାକୁ କହିଲା, ତୁମ୍ଭେ କାତର ହୁଅ ନାହିଁ । ମୁଁ ତୁମ୍ଭର ଦୋଷ କାହାରି ଆଗରେ ନ କହି, ଚୋରମାନେ ମୋର ଅଳଙ୍କାର ନେଇ ମୋତେ କୂଅକୁ ପେଲି ଦେଲେ, ମୋର ସ୍ୱାମୀଙ୍କୁ ବାନ୍ଧି ନେଇଗଲେ ବୋଲି କହିଅଛି । ତୁମ୍ଭେ ମଧ ମୁଁ କହିଲା ପରି କହିବ । ତା ହେଲେ

ମୋର ପିତାମାତା ତୁମ୍ଭଙ୍କୁ ଆଦର କରି ଅତୁଳ ଅନେକ ଧନ ଦେବେ । ଏପରି କହିବାରୁ ବିଦ୍ୟାଧର ଟିକିଏ ସୁସ୍ଥ ହୋଇ ବସିଲା । ମାତ୍ର ତାର ମନରୁ ଭୟ ଛାଡ଼ି ନ ଥାଏ । ତହିଁପରେ ସୌଦାମିନୀ ତାକୁ ପିଢ଼ା ପାଣି ଦେଇ ବସିବାକୁ ଆସନ ଦେଲା । ଖାଇବା ପାଇଁ ଜଳଖିଆ ଆଣି ଦେଲା । ବାଟରେ ଆସିବାର କୁଶଳବାର୍ତ୍ତା ପଚାରି ଅନେକ ଗୌରବ କଲା । ସେ କୂଅକୁ ପେଲି ଦେଇଥିଲା ବୋଲି ତାହାଠାରେ କିଛି ହେଲେ ରାଗ ନ ରଖି ସ୍ୱାମୀ ଦର୍ଶନ ପାଇଲି ବୋଲି ମନେ ମନେ ଆନନ୍ଦ ହେଉଥାଏ । ଏହି ସମୟରେ ତାର ପିତାମାତା ଘରକୁ ଆସି ଦେଖିଲେ ଯେ ଜୁଆଁଇଁ ଆସି ଅଛନ୍ତି । ସେମାନେ ତ ପୂର୍ବର ଘଟଣା ଜାଣନ୍ତି ନାହିଁ । ଚୋରମାନେ ବାନ୍ଧି ନେଇଥିଲେ ବୋଲି ତ ଝିଅ କହିଥିଲା । ତେଣୁ ଜୁଆଁଇଁ ଜୀବନରେ ବଞ୍ଚିଅଛନ୍ତି ବୋଲି ବଡ଼ ଆନନ୍ଦିତ ହୋଇ ବିଦ୍ୟାଧରକୁ ଅନେକ ଗୌରବ କଲେ । ବିଦ୍ୟାଧର ନିଶ୍ଚିନ୍ତରେ ଖାଇପିଇ ଶ୍ୱଶୁର ଘରେ ମାସେ ଖଣ୍ଡେ ରହି ଘରକୁ ଯିବି ବୋଲି କହିବାରୁ ଆଦିକନ୍ଦ ସୌଦାଗର ପୁନର୍ବି ଝିଅକୁ ଅଷ୍ଟ ଅଳଙ୍କାରେ ମଣ୍ଡି ସ୍ୱାମୀ ସହିତ ଛାଡ଼ିଦେଲା । ସୌଦାମିନୀ ମନରେ କିଛି ହେଲେ ଶଙ୍କା ନ କରି ପତିପରାୟଣା ହୋଇ ବିଦ୍ୟାଧର ସଙ୍ଗେ ଚାଲିଗଲା । ଗୃହ ପାଖ ଦିନର ବାଟ ଗଲା ପରେ ବିଦ୍ୟାଧର ବିଚାର କଲା ଆରଥର କୂଅକୁ ପେଲି ଦେବାରୁ ସିନା ଏ ବଞ୍ଚିକରି ପଳାଇଲା । ଏଥର ଏକବାରେ ପ୍ରହାର କରି ଦେବି ଯେ ଆଉ ଯାଇ ପାରିବ ନାହିଁ । ଅଳଙ୍କାର ପତ୍ରତକ ଧରି ମୋ ସୁଖେ ମୁଁ ଚାଲିଯିବି । ଏମନ୍ତ ବିଚାର କରି ବେଳ ଥାଉଁ ଗୋଟିଏ କାତ ଲୁଚିକରି ରଖିଥାଏ । ରାତିରେ ଖିଅପିଅ କରି ଶୋଇଲେ । ସୌଦାମିନୀଙ୍କ ନିଦ ଲାଗିଯିବାର ଦେଖି ବିଦ୍ୟାଧର ସେ କାତଟି ଉଞ୍ଚାଇ ତାର ବେକ ସଳଖେ

ହାଣି ଦେବ ବୋଇଲେ ବେଳକୁ ସେ କାଢ଼ିଥିବା ଦୁଆର ବନ୍ଧରେ ବାଜି ତାର ହାତରୁ ଖସି ପଡ଼ିଲା ଯେ ଘରବାଲାର ଗୋଟିଏ ଛଇଲା ହାଣ୍ଡି ଥିଲା ତାହା ଉପରେ ପଡ଼ିଲା । ସେ ହାଣ୍ଡିଟା ଗୁଣ୍ଡା ହୋଇ ଫୋଲିଯାଇ ବହିଗଲା । ଭଡ଼ ପଡ଼ି ଦୁମ୍ ଶବ୍ଦ ହେ ଶୁଣିବାରୁ ଘରବାଲା ଧଡ଼ପଡ଼ ହୋଇ ଉଠି ଧାଇଁ ଯାଇ ଦେଖିଲା ବେଳକୁ ଦେଖିଲା ହାଣ୍ଡିଟା ଗୁଣ୍ଡ ହୋଇ ଘିଅ ଯାକ ବହୁଛି । ମାଇପିଟା ବଉଡ଼ା ଫଳ ପରି ଅଛୁଡ଼ି । ବିଦ୍ୟାଧର ପୁଣି ତାକୁ ହାଣିଦେବ ବୋଲି କାତି ଟେକୁଅଛି । ଏହା ଦେଖି ସେ ଡକା ପକାଇଲା ଯେ ଧାଇଁପଡ଼ିଶା ଲୋକେ ଧାଇଁ ଆସି ବିଦ୍ୟାଧରକୁ ବାନ୍ଧି ପକାଇଲେ । ରାତି ପାହାନ୍ତାରୁ ସେକଥା ଦେଶଯାକରେ ଚହଳ ପଡ଼ିଗଲା । ସେ ଦେଶର ରଜା କଟୁଆଳ ପଠାଇ ବିଦ୍ୟାଧରକୁ ବାନ୍ଧି ନେଲେ । ନ୍ୟାୟ ବିଚାର କଲାବେଳେ ସୌଦାମିନୀଙ୍କୁ ପଚାରିବାରୁ ସେ କହିଲେ—ଏ ମୋର ସ୍ୱାମୀ ମୋତେ ହାଣି ଦେଉଥିଲେ କି ? ତାଙ୍କର ମସ୍ତିଷ୍କ ଟିକିଏ ଖରାପ ଅଛି ଯେ ସେ ଦିନେ ଦିନେ ପାଗଳ ହୋଇଯାନ୍ତି । ଏହା ଶୁଣି ରଜା ସତ୍ୟ ବିଚାରି ବିଦ୍ୟାଧରକୁ ପାଗଳ କୋଠକୁ ପଠାଇ ଦେଲେ । ସୌଦାମିନୀ ସେହିଠାରୁ ସ୍ୱାମୀ ଆଶା ଛାଡ଼ି ପିତା ଘରକୁ ନ ଯାଇ ବ୍ରହ୍ମଚାରିଣୀ ହୋଇ ତପସ୍ୟା କଲା । ସେ ଯେ ଋଷିବୀର୍ଯ୍ୟରୁ ଜାତ ହୋଇଥିଲା, ତେଣୁ ବ୍ରହ୍ମଚର୍ଯ୍ୟ ପାଳନ କରି ବ୍ରହ୍ମତେଜ ପ୍ରଭାବରେ ପରମପଦ ଲାଭ କଲା । ସେ ଦେହତ୍ୟାଗ କରିବାକୁ କେତେଦିନ ଥାଉ ଥାଉ ଏକ ଧର୍ମଶାଳାଟି ତୋଳାଇ ତହିଁରେ ପୁରୁଷ ଓ ନାରୀର ଛବି ଅଙ୍କିତ କରି ପୁରୁଷ ଜାତି ଅବିଶ୍ୱାସୀ ବୋଲି ଲେଖି ଦେଇଅଛି ଯେ ତାହା ଅଦ୍ୟାପି ରହିଅଛି । ଅତେବ ଅବୋଲକରା, ଏ କଥା ଏତିକି ଫଳି ଫୁଟି କେତକୀ ।

---

## ବୁଢ଼ାବାପା କଥା

କଥାକୁହା ଶେଷକର ସାମନ୍ତ ଓ ଅବୋଲକରା ଦୁହେଁ ସେଠାରୁ ଦକ୍ଷିଣ ମୁଖରେ ଚାଲିଗଲେ । ଯାଇ ଯାଇ ବାଟରେ ଅନେକ ଦେଶ, ପୁର, ଗ୍ରାମ, ପଲ୍ଲୀ, ପାଟଣା, ବଣ, ପର୍ବତ, ନଈ, ନାଳ ଦେଖି ଦେଖି ଠାକୁ ଠା ବସା ପାଡ଼ି ପାଡ଼ି ଯାଉଥାନ୍ତି । ଏପରି କେତେଦିନ ଗଲା ପରେ ବେଙ୍କଟାଚଳ ନିକଟ ଗୋଟିଏ ସହର ପାଖରେ ପହଞ୍ଚିଲେ । ସେହିଠାରେ ବେଣୀନଦୀର ଗୋଟିଏ ଶାଖା ଧାର ବହୁଥାଏ । ଜାଗାଟି ଅତି ନିର୍ମଳ । ନିକଟରେ ଶିବ ମନ୍ଦିର ଅଛି । ଏମାନେ ତ ତୀର୍ଥଯାତ୍ରୀ, ଦେବାଳୟ କିମ୍ବା ବୃକ୍ଷମୂଳ ଛାଡ଼ି ଅନ୍ୟ ସ୍ଥାନରେ ରହିବେ ନାହିଁ । ବେଳ ଢଳିବାର ହେବାର ଦେଖି ସାମନ୍ତ ବୋଇଲେ, ଅଜି ଏହି ଶିବ ମନ୍ଦିର ନିକଟରେ ରହି କାଲି ସକାଳୁ ଉଠି ଚାଲିଯିବା । ଅବୋଲକରା ହେଉ କହି ଲୁଗାପଟା ଭାର ଥୋଇ ଦେଇ ସଉଦା କିଣିବାକୁ ଗଲା । ସାମନ୍ତ ସ୍ନାନ ସନ୍ଧ୍ୟା ଶେଷକରି ସଉଦା ଆଣିଲେ ରାନ୍ଧିବେ ବୋଲି ଚାହିଁ ବସିଅଛନ୍ତି । ତେଣେ ଅବୋଲକରା ବଜାରକୁ ଯାଇ ସଉଦାପତ୍ର କଣାକିଣି କଲା । ଫେରି ଆସିଲା ବେଳକୁ ମନେ ମନେ ବିଚାରିଲା ସତେ କଣ ମୋ ଜୀବନରେ ଆଉ ଥରେ ଏ ଆଡ଼େ ଆସିବି କି ? ଭଲା ଟିକେ ବୁଲିବୁଲି କରି ଦେଖେ, କେଜାଣି କେଉଁଠି କଣ ଅଶ୍ଚର୍ଯ୍ୟ କଥା ଥିବ । ଏମନ୍ତ ବିଚାରି ବୁଲି ବୁଲି ଦେଖିଲା ଯେ ସେହି ସହର ପାଖରେ ଗୋଟିଏ ଛତ୍ରଘର ଅଛି । ସେ ଛତ୍ର ଘରର ଆଗ ସାମନାରେ ଗୋଟିଏ ମଣ୍ଡପ ଅଛି । ସେ ମଣ୍ଡପ ମଧ୍ୟରେ ପଥରରେ ଗଢ଼ା ହୋଇ ଗୋଟିଏ ବୁଢ଼ା ବସିଅଛି । ବୁଢ଼ାର ଗୋଡ଼ତଳେ ଗୋଟିଏ ଯୁବା ପୁରୁଷ ମୁଣ୍ଡରେ ହାତ ଯୋଡ଼ି ବସିଅଛି । ଏହା ଦେଖି

ଅବୋଲକରା ପବନ ବେଗରେ ଧାଇଁ ଅସି ସଉଦାଗରଙ୍କ ଥୋଇଦେଇଗଲା ସାମନ୍ତଙ୍କ ପଚାରନ୍ତି—ଗୋସାଇଁ, ମୁଁ ଗୋଟିଏ କଥା ଦେଖିଲି, କହିଲି । ସାମନ୍ତ ବୋଇଲେ—କଣ ଦେଖିଲୁ କି ? ଅବୋଲକରା ବୋଇଲା, ଏହି ସହର ନିକଟ ଛକଘର ପାଖ ମଣ୍ଡପରେ ପଥର ପାଲିଙ୍କି ବୁଢ଼ା ଜଣେ ବସିଛି । ତାର ଗୋଡ଼ତଳେ ଅଉ ଜଣେ ସୁନ୍ଦର ଯୁବା ପୁରୁଷ ମୁଣ୍ଡରେ ହାତ ଦେଇ ଅତି ବିନୟରେ କଣ ଦେଖେ ଜଣାଉଥିଲା ପରି ବସିଅଛି । ସେ ବୁଢ଼ା କିଏ, ସେ ଯୁବା କିଏ ? ସେହି ଦୁହିଙ୍କର ପ୍ରତିମୂର୍ତ୍ତି କାହିଁକି ସେଠାରେ ବସା ଯାଇଅଛି, ତାହା କାହିଁକି କିଏ ବସାଇ ଥିଲା, ତହିଁର କାରଣ ମୋତେ କହିଦିଅ । ସାମନ୍ତ ବୋଇଲେ— ଅଚ୍ଛା, କହିବି ଯେତିକିଏ ଦମ୍ଭ ଧର । ମୁଁ ଅଗ ଗୋଡ଼ଘେଇ ବସାଇ ଦିଏ । ଏହା କହି ସାମନ୍ତ ତାଲି ଭାଙ୍ଗ ବସାଇ ଦେଇ ବୋଇଲେ— ପଚା କମ୍ବଳ ପୋତି ଛଡ଼ା, ବସ ଅବୋଲକରା କହିବା କଥା ।

ପୂର୍ବକାଳେ ଏହି ଗ୍ରାମରେ କୋଉଁକ୍ଷ ନାମକ ଜଣେ ସାଧବ ଥିଲା । ତାର ବହୁତ ଧନ ଥାଏ । ସେ ନାନାଦ ପ୍ରକାର ବଣିଜ ଓ ବେପାର କରୁଥାଏ ସିନା କିନ୍ତୁ କାହାରଠାରେ ବିଶ୍ୱାସ କରେ ନାହିଁ କି କାହାର ଅନିଷ୍ଟ କରେ ନାହିଁ । ସଂସାର ମଧ୍ୟରେ ତାର ବିଶ୍ୱାସୀ ବୋଲି ଜଣେ ମାତ୍ର ଅଛି । ସେ ଲୋକଟିର ଘର ସେହି ପାଖ ଗ୍ରାମରେ । ତାହାର ନାମ ଟଙ୍କଧର ସାହୁ । ସେ ଦୁହେଁ ମିଶି ବସି ଏକପ୍ରାଣ ହୋଇଥାନ୍ତି । ଯାହା ବୋଲନ୍ତି ଗୋଟେ ଗଣ୍ଡିରେ ଯେତେ ମୁଣ୍ଡ, ସେ ଦୁହେଁ ସେହିପରି ଚଳୁଥାନ୍ତି । କୋଉଁମଲ୍ଲର ପୁଅବୋଲି ଗୋଟିଏ । ଅଉ ଝିଅ ଝିଅଣିଅ ଭାଇ ବନ୍ଧୁ କେହି ଗୁଡ଼େ ନ ଥାନ୍ତି । ସେ ପୁଅଟିର ନାମ ଶତମଲ୍ଲ । ଗୋଟିଏ ପୁଅ ବୋଲି ବାପ ମାଆ ତାକୁ ବଡ଼ ଅଦରରେ ବଢ଼ାଇ ଥାନ୍ତି । ଯେତେବେଳେ ସେ ପ୍ରଅଲ ପନ୍ଦର କୋଡ଼ିଏ ବର୍ଷ ବୟସ

ହୋଇଗଲା, ସେ ସେତେବେଳେ ଟିକିଏ ଖଣ୍ଡିକଡ଼ା ଦେଲା ପରି ମାମଲତକାର ହୋଇ ବାହାରିଲା। ବାପର ସିନା ଗୋଟିଏ ମିତ୍ର, ସେ ଶଏ କି ଦେଢ଼ଶହ, ହେବ ମିତ୍ର ସମ୍ପାଦିଲା। ପ୍ରତିଦିନ ସନ୍ଧ୍ୟାବେଳେ ଯାଏ ଯେ, ଏ ମିତ ପାଖରେ ଘଡ଼ିଏ, ସେ ମିତ ପାଖରେ ଘଡ଼ିଏ, ଅର ମିତ ପାଖରେ ଦି ଘଡ଼ି, ଏପରି ବସୁ ବସୁ ରାତି ଦୁଇ ପ୍ରହର ହୁଏ। ଏଣେ ତାର ବାପ ବୁଢ଼ାଟି ଗୃହିଁ ବସିଥାଏ ପୁଅ ଅସିଲେ ମୁଠେ ଖାଇବ ବୋଲି। ପୁଅ ମିତମାନଙ୍କର ପାଖେ ବସି ମାମଲତି ବୁଝି ବୁଝି ଅଧରାତକି ଅସିଲା ବେଳକୁ ଭାତ ତରକାରୀ ଇକର ହୋଇ ଯାଇଥାଏ। ବୁଢ଼ାର ତଣ୍ଟିରେ ଗଲା କି ନ ଗଲା ପେଟ ଜ୍ୱଳରେ ମୁଠେ ମୁଠେ ଖାଆନ୍ତି। ଏହିପରି ପ୍ରତିଦିନ ଲାଗିଥାଏ। ଗୋଟିଏ ପୁଅବୋଲି ବାପ ମା ତାକୁ ଅଜ୍ଞା କିଛି କହୁ ନ ଥାନ୍ତି। ଏପରି ବର୍ଷେ ବୁଲିଗଲା ପରେ ଦିନେ ବୁଢ଼ା ରାଗିକରି ବୋଇଲା—କିରେ ପୁଅ, ତୁ ସବୁଦିନେ ଏତେ ରାତି ପର୍ଯ୍ୟନ୍ତ କୁଆଡ଼େ ଯାଉଛୁ ଯେ, ତୋ ଲାଗି ମୁଁ ମୁଠେ ଖାଇ ନ ପାରି ଗୃହିଁ ଗୃହିଁ ମୋର ହାଲିକ ଶୁଖି ଯାଉଛି? ପୁଅ ବୋଇଲା—ବାପା, କଣ କହିବି, ମୋର ପଚାଶ କି ଷାଠିଏ ମିତ ଅଛନ୍ତି, ତାଙ୍କର ପାଖରେ ଟିକିଏ ଟିକିଏ ବସିକରି ଅସିଲା ବେଳକୁ ତ ରାତି ଅଧ ହୋଇ ଯାଉଛି। ଦିନେ ନ ଗଲେ ମିତମାନେ ଦୁଃଖ କରୁଅଛନ୍ତି। ତେଣୁ ବାଧହୋଇ ଯିବାକୁ ପଡ଼ୁଛି। ଏହା ଶୁଣି ବୁଢ଼ା ଟିକିଏ ମୁରୁକି ହସା ଦେଇ ବୋଇଲା—ବାଃ, ତୁ ମୋଠାରୁ ବଳିଗଲୁ, ତୋହର ଏ ଯୋଗ୍ୟପଣ ଶୁଣି ମୁଁ ବଡ଼ ଅନନ୍ଦ ହେଲି। କାହିଁକି ବୋଲିବୁ, ପାଠ ଲେଖିଅଛି—"ସର୍ବତ୍ର ଜୟମାଦିଚ୍ଛେତ୍ ପୁତ୍ରାଦିଚ୍ଛେତ୍ ପରାଜୟଂ"। କାହାର ଲୋକେ ସମସ୍ତଙ୍କଠାରୁ ଜୟ ପାଇବାକୁ ଇଚ୍ଛା କରନ୍ତି। ମାତ୍ର ପୁତ୍ରଠାରୁ ପରାଜୟ ପାଇବାକୁ ଇଚ୍ଛା କରିଥାନ୍ତି। କାରଣ ପୁଅ ଯେତେକ ସକଳ ଗୁଣରେ ଅଧିକ ହେବ, ତା ହେଲେ

ବାପକୁ ପରାଜୟ କରବ । ଏବେ ମୁଁ ଜାଣିଲି ଯେ, ତୁ ମୋଠାରୁ ବଳିଗଲୁ । କପର ବୋଲୁବୁ, ମୋତେ ୭୦ ବର୍ଷ ହେଲାଣି । ମୁଁ ମୋ ଜୀବନରେ ଅନେକ ଧନ ଅର୍ଜିଲି, ଅନେକ ଯଶ ପୌରୁଷ ମଧ୍ୟ ଅର୍ଜିଲି । କନ୍ତୁ ସଂସାରରେ ମୋର ଗୋଟିଏ ଛଡ଼ ଯୋଡ଼ାଏ ମିତ ନାହାନ୍ତି । ତୋତେ ଦୋଡ଼ିଏ କ ବାଇଶ ବର୍ଷ ହୋଇଛି, ତୁ ଯେବେ ଏତିକ ବୟସରେ ଷାଠିଏ କ ସତୁର ମିତ୍ର ଅର୍ଜିଲୁଣି, ତା ହେଲେ ଅହୁରି କେତେ ମିତ୍ର ଅବା ଅର୍ଜି ନ ପାରବୁ ? ଏଣିକି ତୁ ଯେତେ ଗ୍ରୀତକ ଅସିଲେ ମଧ୍ୟ ଅଜ ତୋତେ କଛି କହବ ନାହିଁ । ଏହା ଶୁଣି ପୁଅ ଆନନ୍ଦରେ ଫୁଲିଗଲା । ଗ୍ରୁର ପାଞ୍ଚଦନ ଗଲାପରେ ଦନେ ବୁଢ଼ା କଣ କଲା ନା, ତାର ଗୋଟିଏ ଗ୍ରୁକର ଟୋକା ଥାଏ । ତାକୁ ସଞ୍ଜବେଳୁ ଡାକ ପେଟେ ଖାଇବାକୁ ଦେଇ କହିଲା—ତୁ ଏହି ଧାନ କୋଠିଘର ଭିତରେ ମଲାପରି ପଡ଼ିଥିବୁ, ସିଏ ଯେତେ ଡାକିଲେ ଶୁଣିବୁ ନାହିଁ କ ତଡ଼ାଗଡ଼ କଲେ ହଲଚଲ ହେବୁନାହିଁ । ମୁଁ ଯେତେବେଳେ ତୋର ନାକଟା ଧରି ମୋଡ଼ି-ଦେବି ସେତକବେଳେ ଉଠି ବସିବୁ । ଏହା କହ ତାକୁ ସେ କୋଠିଘର ଭିତରେ ଶୁଆଇ ଦେଇ ଆପେ ଅସି ନାଳ ଦୁଆର ମୁହଁଟିରେ ନବେଦ ହେଲାପରି ବସିଥାଏ । ପୁଅ ତେଣେ ମିତ୍ରମାନଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଅସିଲା ବେଳକୁ ଗ୍ରତ ଅଧ ହେଲାଣି । ଅସି ଦେଖିଲା ଯେ, ବାପଟି ଖାଦଟା ହେଲା ପରି ବସିଅଛି । ତାକୁ ବୋଇଲା—ବାପା, ଉଠ ଖାଇବ । ବୁଢ଼ା ଟିକିଏ ସକସକ ହୋଇ କାନ୍ଦଲା ପରି ବୋଇଲା, ଖାଇବା କଣ ? ଅଜି ମୁଁ ଯେଉଁ ବପଦରେ ପଡ଼ିଅଛି, ତହିଁରୁ କପରି ରକ୍ଷା ପାଇବା ସେ କଥା ଅଗ ବଗ୍ଭର କଲୁ । ପୁଅ ବୋଇଲା—କଣ ବପଦ ? ବୁଢ଼ା ବୋଇଲା—ଗ୍ରୁକର ପିଲାଟା ବୋଲ ନ କଲା ବୋଲି ମୁଁ କ୍ରୋଧରେ ତାକୁ ଚଟକଣାଟେ ମାରଦେଲି ଯେ, ସେ ଏକା

ଚଟକଣାରେ ମାରଗଲା । ତାକୁ ଧାନଘରେ ପକାଇ ଦୁଆର କଣ୍ଟ ଦେଇଅଛୁ । ଏହା ଆଉ କେହି ଜାଣି ନାହାନ୍ତି । ଏବେ ଏଥକୁ କଣ କରିବା କହିଲ ? ପୁଅ ବୋଇଲା—ଏହି ଛାର କଥାକୁ ଏତେ କାହିଁକି ଡରୁଅଛ ? ବସ ମୁଁ ଯାଉଛି ମୋର ମିତମାନଙ୍କୁ ଡାକିଆଣି ଏହି ରାତ ଭିତରେ କୁଆଡ଼େ ନେଇ ହଜେଇ ଦେବି ଯେ ପତ୍ତା ମିଳିବ ନାହିଁ । ତୁମ୍ଭେ କାହିଁକି ଭୟ କରୁଅଛ ? ଏହା କହି ଲଠି ଖଣ୍ଡେ ହାତରେ ଧରି ସେହିକ୍ଷଣି ଗୃଲିଗଲା । ପ୍ରଥମେ ଯାଇ ଗୋଟିଏ ମିତକୁ ଡାକିବାରୁ ସେ ବଡ଼ ବ୍ୟସ୍ତ ହୋଇପରି ଉଠି ବୋଇଲା—କାହିଁକି ଏତେ ରାତରେ ଆସିଅଛ ? ସାଧବପୁଅ ତାକୁ ଚଳିଥିବା କଥାଟି କହିଦେଇ ବୋଇଲା—ବେଗେ ଆସିଲେ, ଠିକିଏ ରାତ ନ ପାହୁଣୁ ଲସଟାକୁ କୁଆଡ଼େ ନେଇ ହଜାଇ ଦେବା । ଏହା ଶୁଣି ସେ ମିତ ବୋଇଲା, କଣ କହିଲ—ତୁମେ ମଣିଷଟେ ମାରିଦେଇଛ, ମୋତେ ଡାକୁଛ ଆସିଲ ହଜାଇ ଦେବା ବୋଲି ପଳା ପଳା । ଯାହା ତ ହେବାର ହେଲାଣି । ମୋ ପାଖକୁ ଆସିଥିଲ ବୋଲି କାହାରି ଆଗରେ କହିବ ନାହିଁ । ଏହା କହି ସେ କବାଟଟା ଧଡ଼ୋଇବି କଣ୍ଟ ଦେଲା । ସାଧବପୁଅ ଆଉ କଣ କହିବ ସେଠାରୁ ଯାଇ ଆଉ ଗୋଟେ ମିତକୁ ଉଠାଇଲା । ତାକୁ କହିବାରୁ ସେ ବୋଇଲା—ଆମେ ସାଙ୍ଗ ସୁଖ ହୋଇ ମେଳା ମଉଜ କରୁଥିଲେ ସିନା, ତୁମେ ମଣିଷଟେ ମାରି ଦେଇ ଆସି ଡାକୁଅଛ ଯେ, ମୁଁ ତୁମ୍ଭପାଇଁ ଫାଶି ହେବାକୁ ଯିବି କି ? ଯାଅ ଯାଅ ପଳାଅ, ପଳାଅ । ଏହା ଶୁଣି ତାକୁତରେ ସେଠାରୁ ଯାଇ ଆଉରି କେତେଟା ମିତଙ୍କୁ ଉଠାଇ ତାଙ୍କୁ କହିବାରୁ ସେମାନେ ଆଗ ମିତମାନଙ୍କ ପରି କହି ପଳା ପଳା ବୋଲି ତଡ଼ିଦେଲେ । ଲୋକେ ତ କହନ୍ତି—ତୁଣ୍ଡେ ତୁଣ୍ଡେ କି ହୁଏ ସଙ୍ଗାତ, ଯାଳ ନାଥିଁରେ କି ଛାଡ଼ଇ ଶୀତ । ସେହିପରି ତୁଣ୍ଡେ ତୁଣ୍ଡେ

ପିନା ସଙ୍ଗାତ ମିତ ହୋଇ ମଜଲ ମଜଲିସ କରୁଥିଲେ, ଯେତେବେଳେ ବିପଦର ଶେଷ ସୀମା ଆସି ପହଞ୍ଚିଗଲା, ସେତେବେଳକୁ କିଏ ମିତ କାର, କିଏ କାହାପାଇଁ ଫାଶିରେ ଚଢ଼ିବାକୁ ଯିବ । ଗୋଟିଏ କେହି ବାହାରିଲେ ନାହିଁ । ସାଧବପୁଅ ଆଉ କଣ କରିବ, ବାହୁଡ଼ି ଆଇଲା ଯେ, ତା ମୁହଁରେ ଆଉ ଟୋପେ ପାଣି ନାହିଁ । ଘରକୁ ଅସିବାରୁ ବାପ ବୋଇଲା, କିରେ ପୁଅ, ମିତମାନେ କାହାନ୍ତି ? ପୁଅ ଆଖିରେ ଲୁହ ଟଳ ଟଳ କରି ବୋଇଲା—ବାପା ! ସବୁ ମିତମାନଙ୍କୁ ଡାକିଲି ଯେ ଗୋଟିଏ କେହି ଅସିଲେ ନାହିଁ । ଥରକୁ ଦିଥର କହିବାରୁ ଅଧିକରେ ନାନା ଭର୍ତ୍ସନା କରି ଗାଳଦେଇ ପାଖରୁ ତଡ଼ିଦେଲେ । ବୁଢ଼ା ବୋଇଲା ଏହିପରି ମିତଗୁଡ଼ିଏ ସମ୍ପାଦ୍ଧ ପ୍ରତିଦିନ ସିତ ପ୍ରହାଇ ଦେଉଥିଲୁ । କିରେ ବଡ଼ପୁରୁଷେ କହିଅଛନ୍ତି—'ଜାନୀଯ୍ୟାତ୍ ପ୍ରେଷଣେ ଭୃତ୍ୟାନ୍ ବାନ୍ଧବାନ୍ ବ୍ୟସନାଗମେ, ମିତ୍ରଂ ଚାପଦ୍କାଲେ ଚ ଭାର୍ଯ୍ୟାଂ ଚ ବିଭବକ୍ଷୟେ ।' ଚାକରମାନଙ୍କୁ ଗୋଟିଏ କାର୍ଯ୍ୟରେ ପଠାଇବ, ସେମାନେ ସେ କାର୍ଯ୍ୟଟି କରିଦେଇ ଅସିଲା ପରେ ତାଙ୍କୁ ଭଲ କି ମନ୍ଦ ଚିହ୍ନିବ । ବ୍ୟସନ ସମୟରେ ବନ୍ଧୁମାନଙ୍କୁ ଚିହ୍ନିବ, ବିପଦ କାଳରେ ମିତ୍ରମାନଙ୍କୁ ଚିହ୍ନିବ । ଧନ ସରିଗଲାବେଳେ ଭାର୍ଯ୍ୟାକୁ ଭଲ କି ମନ୍ଦ ବୋଲି ଚିହ୍ନିବ; ତୋର ମିତ୍ରମାନଙ୍କର ମିତ୍ରପଣିଅ ଏବେ ଜଣାଗଲା । ଯାହା ହେଉ ମୋର ଗୋଟିଏ ମାତ୍ର ମିତ ଅଛନ୍ତି; ତାଙ୍କ ନାମ ଟଙ୍କଧର ସାହୁ । ତୁ ଏବେ ତାଙ୍କର ପାଖକୁ ଯା । ତାଙ୍କୁ ଏ କଥା କହି ବାପା କହିଛନ୍ତି ଅସ ବୋଲି ଡାକିବୁ; ଦେଖିବା ସେ କଅଣ କହୁବେ । ଏହା ଶୁଣି ଶତମଲ୍ଲ ତକ୍ଷଣେ ଯାଇ ଟଙ୍କଧର ସାହୁଙ୍କ ଦୁଆରେ ଡାକିଲା । ସେ ସେହିକ୍ଷଣି ଉଠି ବୋଇଲେ—କିରେ ବାପା, କାହିଁକି ଏତେ ରାତରେ ଅସି ଡାକୁଅଛୁ ? ଶତମଲ୍ଲ ତାଙ୍କୁ ସବୁ

ଘଣ୍ଟାପାକ କହି ତୁମ୍ଭଙ୍କୁ ଡାକି ନେବାପାଇଁ ବାପା ପଠାଇ ଅଛନ୍ତି ବୋଲିବାରୁ ସେ ତତ୍‌କ୍ଷଣେ ଗାମୁଛା ଖଣ୍ଡେ ପିନ୍ଧି ଠେଙ୍ଗାଟେ ଧରି ବୋଇଲେ, ଚାଲ ଏହି ଭଳିରେ ଠିକଣା କରିଦେବା । ଏଇ କଥାକୁ ଏତେ ଡରୁଅଛ ? ଏହା କହି ତାର ସଙ୍ଗେ ସଙ୍ଗେ ଚାଲି ଆସିଲାବେଳକୁ ସାଧବ ବୁଢ଼ାଟି ମୁଣ୍ଡରେ ହାତ ଦେଇ ବସିଅଛି । ଝଙ୍କଧର ସାହୁ ବୋଇଲେ, ମିତ ତୁମ୍ଭ ପୁଅଠାରୁ ସବୁ ଶୁଣିଲିଣି । ତୁମ୍ଭେ ଆଉ କାନ୍ଦୁ କର ନାହିଁ । ସେ ପିଲାଟା କୁଠେଇଁ ପଡ଼ିଛି, ତାଙ୍କୁ ଟିକେ ଆଗ ଦେଖାଇ ଦେଲ । ସେ କେଡ଼ୁଟେ ମୁଁ ଦେଖେଁ । ଏହା ଶୁଣି ସାଧବ ବୁଢ଼ା କୁହୁ କୁହୁ ହୋଇ ଧାନଘର କବାଟ ଫିଟାଇ ଦେଇ ବୋଇଲା, କେଉଁଠି ଏଇ ପିଲାଟା ଦେଖ । ଝଙ୍କଧର ସାହୁ ବୋଇଲା, ଏଇଟାକୁ ମୁଁ ତ ଏକାବେଳେ ଟେକି ନେବି । ତୁମ୍ଭେ ବାପ ପୁଅ ଦୁହେଁ ଲୁଣ ଦୁଇ ନୌତି, ବୋଡ଼ି ଶାବଳ ଧରି ବେଗେ ଆସିଲ । ନାଲି ତଳଅଡ଼େ ନେଇ ଠିକଣା କରିଦେବା ଯେ ତାର ଆଉ ପତ୍ତା ମିଳିବ ନାହିଁ । କିଏ ପଚାରିଲେ କହିବା ଗୋରୁ ଚରାଇ ଯାଇଥିଲା, ତାକୁ ବଣରେ ବାଘ ଖାଇଗଲା । ଏହା ଶୁଣି ସାଧବ ବୁଢ଼ା ଯାଇ ସେ ଟୋକାର ନାକଟାକୁ ମୋଡ଼ିଦେଇ ବୋଇଲା, ଉଠ ଉଠ, ସଞ୍ଜବେଳୁ ତୁ ଶୋଇଲୁଣି, ଆଜ କେତେ ଶୋଇଥିବୁ । ସେ ଏପରି ଉଠାଇ ଦେବାରୁ ଚାକରଟି ଉଠି ବସିଲା । ତାହା ଦେଖି ଝଙ୍କଧର ସାହୁ ବୋଇଲେ—ମିତ ଏ କି ରହସ୍ୟ, ଏପରି ଘଟଣା କାହିଁକି କରିଥିଲ ? ସାଧବ ବୁଢ଼ା ବୋଇଲା, ପୁଅ ମୋର ଷଠିଏ କି ସତୁରି ଜଣ ମିତ୍ର ଅର୍ଜିଅଛି ବୋଲି କହିବାରୁ ଆଜି ତାର ସେହି ମିତ୍ରମାନଙ୍କୁ ପରୀକ୍ଷା କରୁଥିଲି । ଏବେ ତାକୁ ପଚାରିଲି ତାର ମିତ୍ରମାନେ କିପରି, ତୁମ୍ଭେ ମୋର ଏକମାତ୍ର ମିତ୍ର, ତୁମ୍ଭେ କିପରି ? ଏହା ଶୁଣିବାମାତ୍ରେ ପୁଅ ସେ ଦୁହିଙ୍କ ଗୋଡ଼ତଳେ ପଡ଼ି

ବୋଇଲା—ଆଜ ପର୍ଯ୍ୟନ୍ତେ କଣ, ମୁଁ ତ ସାକ୍ଷାତରେ ଅନୁଭବ କରି କାନ ମୋଡ଼ି ହେଲିଣି ଯେ ଆଉ ସେ ଶଠ ମିତ୍ର ଗୁଡ଼ାକର ମୁହଁ ଚାହିଁବି ନାହିଁ । ତୁମେ ଆଉ ଶିକ୍ଷା ଦେବ କଣ ? ଝିଙ୍କଧର ସାହୁ ବୋଇଲା—ନାହିଁ ରେ ତୁ ଅଦ୍ଭୁତ ଜାଣି ନାହୁଁ କପଟ ଲୋକ ସଙ୍ଗେ ମିତ୍ର ହେବ । ଏବେ ମୁଁ ବାପ କହୁଅଛି ଶୁଣିଥା— ପରୋକ୍ଷେ କାର୍ଯ୍ୟହନ୍ତାରଂ ପ୍ରତ୍ୟକ୍ଷେ ପ୍ରିୟବାଦିନଂ । ବର୍ଜୟେତ୍ତାଦୃଶଂ ମିତ୍ରଂ ବିଷକୁମ୍ଭ ପୟୋମୁଖଂ । ଯେ ପ୍ରିୟକଥା କହି ପଛରେ କାର୍ଯ୍ୟନାଶ କରୁଥିବ ତାକୁ ବିଷପୂର୍ଣ୍ଣ କୁମ୍ଭ ମୁଖରେ କ୍ଷୀର ଥିଲା ପରି ଜାଣି ତାର ପରିତ୍ୟାଗ କରିବ । ଏପରି ସେ କଥାବାର୍ତ୍ତା ହେଉ ରାତି ପାହିଗଲା । ଝିଙ୍କଧର ସାହୁ ତାର ଘରକୁ ଗଲା । ସାଧବଘର ପିତା ପୁତ୍ର ନିଜ ଘରେ ରହିଲେ । ସେହିଦିନ ଠାରୁ ଖଟମଲ୍ଲ ଆଉ ସେ ମିତମାନଙ୍କର ସୀମାକୁ ଗଲା ନାହିଁ । କେତେ କାଳ ପରେ ସାଧବ ବୁଢ଼ାର ମରିବା ସମୟ ଉପସ୍ଥିତ ହେବାରୁ ସେ ପୁଅକୁ ବସାଇ କହିଲା, ଦେଖେ, ମୁଁ କେତେ କଷ୍ଟରେ ଉପାର୍ଜନ କରି ଏ ସବୁ ସମ୍ପଦଯାକ ତୋରିପାଇଁ ରଖିଅଛି । ଏବେ ମୋର ମରିବାକାଳ ଅସି ନିକଟ ହେଲଣି, ଆଜ ଗୁରୁଦିନ କି ଆଠ ଦିନରେ ମରିଯିବି । ମାତ୍ର ମୁଁ କେତେଗୋଟି କଥା ତୋତେ କହିବି । ତୁ ସେଗୁଡ଼ିକ ମନେ ରଖି ଯେବେ କାର୍ଯ୍ୟ କରିବୁ ତେବେ ଏ ସମ୍ପତ୍ତି ଭୋଗ କରି ନିଶ୍ଚିନ୍ତରେ ରହିବୁ । ନୋହିଲେ ବୁଡ଼ା ବାଳୁଙ୍ଗା ପରି ହୋଇ କୁଅଡ଼େ ଛତ୍ର ଖାଇଯିବୁ । ପୁଅ ବୋଇଲା—କଣ କରିବି କହିଲ ? ବୁଢ଼ା ବୋଇଲା, ନ ଖେଳିବୁ ଯୁଅ । ନ ଡେଇଁବୁ କୂଅ । ନ ଶୁଳିବୁ ଖଞ୍ଜେ । ନ ଖାଇବୁ ସଞ୍ଜେ । ନ ଶୋଇବୁ ମଠେ । ନ ଗାଧୋଇବୁ ତୁଠେ । ନାରୀଙ୍କୁ ବିଶ୍ୱାସର କଥା । ନ କହି ପୋତୁଥିବୁ ମଥା । ଯାହାକୁ ଦେବୁ ତାକୁ ନ ମାଗିବୁ । ସଜ୍ଜନେ ନ କରି କପଟ । ବାରିଦ୍ୱାରେ

ବସାଇବୁ ହାଟ । ସବୁ ଛପର ନ କରିବୁ । ତିନି ମୁଣ୍ଡିଅକୁ ପଗୁର ବୁଝିବୁ । ଏହି ମାତ୍ର ଯାକ ପାରିଲେ କର । ନଇଁ କିଏ ହୁଣ୍ଡିବୁ ଧରିକରି ଶୀଘ୍ର । ଏହା ଶୁଣି ପୁଅ ଟିକିଏ ହସିଦେଇ କହିଲା— "ଜଙ୍ଘ ବଳଥିଲେ ଡେଇଁବା କୂଅ । ଦାନ ପଡୁଥିଲେ ଖେଳିବା ଯୁଅ । ବେଳ ଯେବେ ଥିବ ଗୁଳିବା ଖଞ୍ଜେ । ପାକ ଯାଉଥିଲେ ଖାଇବା ସଞ୍ଜେ । ନିଦ ନ ଭାଙ୍ଗିଲେ ଶୋଇବା ମଠେ । ପାହାଚ ମିଳିଲେ ଗାଧୋଇ ତୁଠେ । ଅଜ୍ଞ ବାଙ୍କା କଥା କାଳକୁ ଦେଖି । ପାରିଲେ କରିବା ମନକୁ ଯୋଖି ।" ଏହା ଶୁଣି ବୁଢ଼ା ବୋଇଲା ତୁ ତ ମୋଠାରୁ ବଳି ଗଲୁଣି । ମୁଁ ଅଉ ତୋତେ ଉପଦେଶ କଣ ଦେବି ? ହେଉ ହେଉ, ମୁଁ ତ ନିକଟରେ ମରିବି । ପାଣି ପଣା ପ୍ରାନ୍ତରେ ବୁଝିବୁ । ଏହା କହି ବାପଟି ମରିଗଲା । ପୁଅ ତାର ଶ୍ରାଦ୍ଧବାଧ କରି ଘର ବୁଝିଲା । ମାତ୍ର ବାପ କହିଥିବା କଥାଯାକ ମନେ ମନେ ଭାବୁଥାଏ । ଦିନକର ସେ କୁଅଡ଼େ ଗଲାବେଳକୁ ଦେଖିଲା ସେ ଦାଣ୍ଡରେ ଗୋଟିଏ ଖଣିଗାଡ଼ ଖୋଳା ହୋଇଅଛି । ମନରେ ପାଞ୍ଚିଲା ବାପ ତ ମୋର କୂଅ ଡେଇଁବାକୁ ମନା କରିଅଛି । ଦେଖିବା, ଅଜି ମୁଁ ଗାତଟାକୁ ଡିଏଁ । ଏହା ଭାବିକରି ଧାଇଁ ଯାଇଁ ଡେଇଁ ପଡ଼ିବ ବୋଇଲା ବେଳକୁ ଝୁଣ୍ଟିଦେଲା ଯେ, ଉପରକୁ ଗୋଡ଼ ଦୁଇଟା ତଳକୁ ମୁଣ୍ଡଟା କରି ସେ ଖଣି ଗାତରେ ଯାଇ ଛେଚିହୋଇ ପଡ଼ିଲା । ଦେଖୁଥିବା ଲୋକେ ନାକରେ ହାତଦେଇ ଟହ ଟହ କରି ହସିଲେ । ଅଣ୍ଟା ଗଣ୍ଠି ସନ୍ଧିରେ ଗୁରୁ ଭଙ୍ଗଯାଇ ଖଣ୍ଡିଆ ହୋଇଗଲା । ଘଡ଼ିକରେ ସେ ଗାତରୁ ଉଠି ଛୋଟେଇ ଛୋଟେଇ ଘରକୁ ଯାଇ ବିଚାରିଲା— ବାପ କଥା ସତ, ଅଜି ଯେବେ କୂଅ ହୋଇଥାନ୍ତା, ମୋର ଭଲା ପ୍ରାଣ ନ ଥାନ୍ତା । ଏମନ୍ତ ବିଚାରି ମୁଣ୍ଡ କାନ ଅଣ୍ଡିପି ବହିଲା । ପୁଣି କେତେ ଦିନ ଗଲା ପରେ ଦିନେ ଯୁଅ ଖେଳରେ ଲୋକେ

ଜିଣିବାର ଦେଖି ଖେଳିବା ବୋଲି ଦୁଇଶହ ଟଙ୍କା ନେଇ ବସିଲା । ଯୁଆଡ଼ିମାନେ ତାକୁ ଅଗ ପଟେ ଦିପଟ ଜିଣାଇ ଦେଲେ । ସେତେବେଳେ ବିଗୁଡ଼ିଲା ବାପ କଥା ମିଛ । ଆଜି ଖେଳରେ ମୁଁ ଅନେକ ଧନ ଜିଣି ନେବି । ଏମନ୍ତ ବିଗୁଡ଼ି କରି ଲୋଭରେ ଖେଳୁଁ ଖେଳୁଁ ସେ ଦୁଇଶ ଟଙ୍କା ହାରି ଆହୁରି ଶହେ ଟଙ୍କା ବାକି ହୋଇଗଲା । ସିଠୁଁ ବାପ କହିବା କଥା ସତ ବିଗୁଡ଼ି ଆଉ ନ ଖେଳି ଘରକୁ ପାଇ ଶୋଇପଡ଼ିଲା । ସଞ୍ଜବେଳଯାଏ ଶୋଇ ଉଠିଲା ବେଳକୁ ଦୁଇ ହଜାର ଟଙ୍କା ଲଭ ମିଳିଥାନ୍ତା, ଗୋଟେ ବେପାରୀ ଆସିଥିଲା ଯେ ତାକୁ ଅନ୍ୟ ଜଣେ ନେଇଗଲା । ଏ ନିଦରୁ ଉଠି ଶୁଣିଲା ଯେ ଏପରି ଘଟଣା ଘଟିଅଛି । ସିଠୁଁ ବିଗୁଡ଼ିଲା ଆରେ ବାପ କଥାଯାକ ସବୁ ସତ, ମୁଁ ତୁଚ୍ଛଟାକୁ ଗର୍ବ ସିନା କରୁଥିଲି, ଆଜିଠାରୁ ବାପ କହିବା ପ୍ରକାରେ ଚଳିବି । ଏମନ୍ତ ବିଗୁଡ଼ି କରି ତୁନିହୋଇ ରହିଲା । ପୁଣି କେତେଦିନ ଗଲାପରେ ଦିନେ ସେ ଟିଏ ଖାତକଠାରୁ ସୁରଣହ ଟଙ୍କାର ଗୋଟିଏ ସୁନାହାର ଆଦାୟ କରି ଆସିଲାବେଳକୁ ଦିନ ଦୁଇପ୍ରହର ହେଲାଣି । ଖରା ଲାଗି ଦେହ କାଳିଲା ବାଉଳା ହେଉଛି । ତେଣୁ ଗାଧୋଇବି ବୋଲି ଅଣତୁଠରେ ପଶିଲା । ହାରଟି କୂଳରେ ଥୋଇଦେଇ ଘଡ଼ିଏ ପର୍ଯ୍ୟନ୍ତେ ପାଣିରେ ବୁଡ଼ି ଗାଧୋଇଲା । ତହିଁପରେ ଉଠିଆସି ପୋଛିପୋଛି ହୋଇ ଲୁଗା ପାଲଟିଲା । ପେଟ ତ ଜଳୁଅଛି, ଆଉ ମନେ ନାହିଁ, ହାରଟି ଛାଡ଼ିଦେଇ ଘରକୁ ଚାଲି ଆସିଲା । ଖାଇସାରି ଦେଖେ ତ ହାର ଗୋଟିକ ନାହିଁ । କି କଲି ବୋଲି ଧାଇଁଯାଇଁ ଦେଖିଲା ଯେ, ସେ ମାଳାଟି କେହି ନେଇନାହିଁ । ଯୁଠି ସିଠେଇ ଥୁଆ ହୋଇଅଛି । ସେତେବେଳେ ବିଗୁଡ଼ିଲା, ତୁଠରେ ଗାଧୋଇବା ପାଇଁ ବାପ ଏହି କାରଣରୁ ମନା କରିଥିଲା । ଆଜି ମୁଁ ତୁଠରେ ଗାଧୋଇଥିଲେ କେବେ ଏ ମାଳାଟି ପାଇ ନ ଥାନ୍ତି । ଏବେ ଯାଉଛି ବାପା ଯାହା

ଯାହା କହୁଅଛୁ, ସେ କଥାଗୁଡ଼ିକ ସବୁ କରିଦେବି । ଏମନ୍ତ ବିଚାରି କରି ଯାହାକୁ ଦେଲା, ତାକୁ ଆଉ ମାଗିଲା ନାହିଁ । ଘରଗୁଡ଼ିକ ଛାଡ଼ିଦେଲା । ଆଉ ଛପର କଲା ନାହିଁ । କାଉଁରୁଆରେ ଗୋଟିଏ ହାଟ ବସାଇ ଦେଲା । ଏକାଳେ ତ ଶହେଥର ମାଗିଲେ ମଧ୍ୟ ଲୋକେ ଧନ ନେଇଥିଲେ ଦେଇ ନାହାନ୍ତି; ଆଉ ନ ମାଗିଲେ କିଏ ଦେଉଛି । ତେଣୁ ଯାହାକୁ ଯାହା ଦେଲା ନ ମାଗିବାରୁ ଯାଚକର କେହି ଦେଲେ ନାହିଁ । ଛପର ନ କରିବାରୁ ଘରଯାକ ଭାଙ୍ଗି ଭୁଙ୍ଗି ଉଦ ହୋଇଗଲେ । ବାରି ଦୁଆରେ ହାଟ ବସାଇଲା ଯେ ମାଇପେ ଘରୁ ବାହାରି ଆଉ ହାଟମୁଣ୍ଡ ଯାଇ ପାରିଲେ ନାହିଁ । ପିଠୁ ସେ ବିଚାରି କଲା, ବାପ କହିବା କଥା କଲେ ହଇରାଣ । ନ କଲେ ହଇରାଣ । କେଉଁଟି କଥା ନ କଲି ଯେ ପ୍ରମାଦରେ ପଡ଼ିଲି । ଯାହାହେଉ ସେ ଯେତେ କଥା କହିଥିଲେ, ତାହା ସବୁ ପରୀକ୍ଷା କରି ଭଲ ମନ୍ଦ ଯାହା ହେଲା ଜାଣିଲି । ଆଉ କେବଳ ତଳମୁଣ୍ଡିଆ ସଙ୍ଗେ ବିଶ୍ୱାସ କରିବା କଥାଟି ବାକି ଅଛି । ସେ କଥାଟି ଥରେ ପରୀକ୍ଷା କରି ବୁଝି ଦେଲେ ମନରୁ ସନ୍ଦେହ ଛାଡ଼ିଯିବ । ଏମନ୍ତ ବିଚାରି କରି ତଳମୁଣ୍ଡିଆ ଖୋଜିବାକୁ ଗଲା । ଯେଉଁ ଗ୍ରାମକୁ ଯାଏ ସେ ଗ୍ରାମରେ ଏ ମୁଣ୍ଡ ସେ ମୁଣ୍ଡ ଯାଏ ପଚାରି ପଚାରି ବୋଲେ, କାହା ଘରେ ତଳମୁଣ୍ଡିଆ ଅଛି, ତାକୁ ମୋତେ ଟିକିଏ ଦେଖାଇ ଦିଅ । ତଳମୁଣ୍ଡିଆ ମନୁଷ୍ୟଟେ କାହା ଘରେ ଅଛି ଯେ, କିଏ ତାକୁ ଦେଖାଇ ଦେବ ? ସମସ୍ତେ ନାହିଁ କରନ୍ତି । ଏହିପରି କୋଡ଼ିଏ କି ତିରିଶଟେ ଗାଁ ପାରି ହୋଇ ଗୋଟେ ଗାଁରେ ବଡ଼ସକାଳୁ ପଶିଗଲା ବେଳକୁ ଦେଖିଲା ଯେ, ସେ ଗାଁ ଦାଣ୍ଡର ପଶ୍ଚିମ ମୁଣ୍ଡରେ ଗୋଟିଏ ପାଟେଲା ବୁଢ଼ା ବସି ଖରା ପୁଆଉଁ ଅଛି । ତାର ମୁଣ୍ଡଟି ଦୁଇଅଣ୍ଟୁ ସନ୍ଧିରେ ପଶିଯାଇ ଅଣ୍ଟୁ ଯୋଡ଼ିକ ଉପରକୁ ବାହାରି ପଡ଼ିଥିବାରୁ ସେ ସାକ୍ଷାତ ତଳମୁଣ୍ଡିଆ ପରି ଦିଶୁଅଛି । ତାକୁ ଖଣ୍ଡେ ଦୂରରୁ

ଦେଖି ପଚାରିଲା, ଏଇ ଏକା ଝିଙ୍କମୁଣ୍ଡିଆ । ଯାଉଛି ଯା'ର ସଙ୍ଗେ ବିଶ୍ୱାସ କଲେ ବାପ କହିଥିବା କଥା ଜଣାପଡ଼ିବ । ଏମନ୍ତ ବିଚାର କର ସେହି ବୁଢ଼ା ପାଖରେ ଯାଇ ବସିଲା । ଘଡ଼ିଏ ଦୁଇଘଡ଼ି ବସିଲାରୁ ସେ ବୁଢ଼ା ପଚାରିଲା; କରେ ବାପ, ତୋର ଘର କେଉଁଠି, ତୁ କି ଲୋଡ଼ାରେ ଅସି ମୋ ପାଖରେ ବସିଅଛୁ । ଶତମଲ୍ଲ ବୋଇଲା, ମୋର ଘର ଗୋଦାବରୀ ନଦୀର ଦକ୍ଷିଣାଞ୍ଚଳରେ, ମୋ ବାପର ନାମ କୋଟିମଲ୍ଲ, ମୋର ନାମ ଶତମଲ୍ଲ । ବାପ ମରିବା ସମୟରେ ମୋତେ କେତେଗୋଟି ଉପଦେଶ କଥା କହିଥିଲା । ମୁଁ ତହିଁରୁ କେତେକ ପରୀକ୍ଷା କଲି, ଯେ ଭଲମନ୍ଦ ଦୁଇ କଥା ଘଟିଲା । କୂଅ ତେଇଁବାକୁ, ଯୁଆ ଖେଳିବାକୁ, ତୁଠରେ ଗାଧୋଇବାକୁ, ମଠରେ ଶୋଇବାକୁ ମନା କରିଥିଲା ଯେ ମୁଁ ତାହା କରିବାରୁ ପ୍ରମାଦ ପାଇଲି । ଅଉ—ଘର ଛପର କରିବୁ ନାହିଁ, ଦେଲେ ମାଗିବୁ ନାହିଁ । ବାଡ଼ ଦୁଆରେ ହାଟ ବସାଇବୁ ବୋଲି କହିଲା । ଏ ତିନି କଥା କରିବାରୁ ଯେ ନେଲା ସେ ଦେଲା ନାହିଁ । ଘର ଭାଙ୍ଗି ପଡ଼ିଲା, ମାଇପେ ଘରୁ ବାହାର ପାରିଲେ ନାହିଁ । ବାପ କହିଥିଲା ଝିଙ୍କମୁଣ୍ଡିଆ ସଙ୍ଗେ ବିଶ୍ୱାସ ରଖିବୁ ବୋଲି ଯେ ମୁଁ ଝିଙ୍କମୁଣ୍ଡିଆ ଖୋଜି ଖୋଜି ମାସେ ହେଲା ବୁଲୁଥିଲି, ଅଜ ତୁମ୍ଭ ଝିଙ୍କମୁଣ୍ଡିଆ ଦେଖି ବିଶ୍ୱାସ କଥା ପଚାରୁଅଛି । ଶତମଲ୍ଲ ଏପରି କହିବାରୁ ସେ ବୁଢ଼ା ବୋଇଲା—ବାପ ତୋର ଯାହା ଯାହା କହିଥିଲା ତାହା ସବୁ ଅକ୍ଷରେ ଅକ୍ଷରେ ସତ୍ୟ ଅଟେ । ମାତ୍ର ତୁ କେତେକ ତହିଁରୁ ବୁଝିଲୁ କେତେକ ବୁଝି ପାରିଲୁ ନାହିଁ । ବାପ ତୋର କହିଥିଲା—ଦେଲେ ମାଗିବୁ ନାହିଁ ବୋଲି । ତାର ଅର୍ଥ ହେଉଛି, ଦଶଟଙ୍କାର ସୁନା ବନ୍ଧା ରଖିଲେ ପାଞ୍ଚଟଙ୍କା ହିସାବରେ ଦେବୁ ଯେ ତାକୁ ଅଉ ମାଗିଯିବାକୁ ପଡ଼ିବ ନାହିଁ । ଦେଲେ ତ ମୂଳକଳନ୍ତର ଦେଇ

ତାର ସୁନା ସେ ନେଲ, ନ ଦେଲେ ପାଞ୍ଚଟଙ୍କା ମୂଲକଲନ୍ତର ସ୍ଥଳେ ତୁ ଦଶଟଙ୍କାର ସୁନା ପାଇଲୁ । ପୁଣି ତୋର ବାପ କହିଥିଲା, ଘର ଛପର କରିବୁ ନାହିଁ ବୋଲି ଯେ, ତାର ଅର୍ଥ ହେଉଅଛି, ଘରଖଣ୍ଡିକ କୋଠା କରିଦେବୁ ଯେ, ଆଉ ଛପର କରିବାକୁ ପଡ଼ିବ ନାହିଁ, ନିଶ୍ଚିନ୍ତରେ ରହିବୁ । ବାଡ଼ି ଦୁଆରେ ହାଟ ବସାଇବା କଥାର ଅର୍ଥ ହେଉଅଛି; ବାଡ଼ିରେ ହାଟପରି ଅଳୁ ବାଇଗଣ, ଜହ୍ନି, ଭେଣ୍ଡି, ଶାଗ, ଲଙ୍କାମରିଚ ପ୍ରଭୃତି ଫସଲ କରି ଦେଇଥିବୁ ଯେ, ତୁ ଘରେ ନ ଥିଲେ ସୁଦ୍ଧା ମାଇପେ ସେହି ବାଡ଼ିରୁ ଫଳପରିବା ଆଣି ତରକାରି କରି ଦେଇଥିବେ ଯେ, ତୋତେ ଆଉ ହାଟକୁ ଯିବାକୁ ପଡ଼ିବ ନାହିଁ । ତୁ ଏହା ନ ବୁଝି ତାର ବିପରୀତ ଢଙ୍ଗରେ ଯିବାରୁ କଷ୍ଟ ପାଇଲୁ । ତନ୍ତ୍ରମନ୍ତ୍ରଆ ବୋଲି ଯାହା ମୋତେ ଶକ୍ତି ବିଶ୍ବାସ କଥା ପଚାରିଲୁ ଏ କଥା ଠିକ୍ ହେଉଛି କାହିଁକି ବୋଲିବୁ, ମୋ ଭଳି ବୁଢ଼ାମାନଙ୍କର ଯୁଗ ତମ ଗୁଡ଼ି ଯାଇଥାଏ । ତେଣୁ ସେମାନେ କାହାର ଅନିଷ୍ଟ ଚିନ୍ତା ନ କରି ଯାହା କଲେ ପ୍ରାଣୀମାନଙ୍କର ଭଲ ହେବ ସେହି କଥାଟି ଭୂତ ଭବିଷ୍ୟତ ବିଚାର କରି କହି ଦଅନ୍ତି । ଏହା ଶୁଣି ଶତମଲ୍ଲ ସେ ବୃଦ୍ଧକୁ ନମସ୍କାର କରି ସେଠାରୁ ଫେରିଯାଇ ବାପ କହିବା ପ୍ରକାରେ ଚଳିବାରୁ ନିର୍ବିପଦରେ ସମ୍ପତ୍ତି ଭୋଗ କଲା । ବାପର ସୁଚିନ୍ତା ଯୁଗେ ଯୁଗ ଥାଉ ବୋଲି ସେ ଛୋଟଘରଟିଏ ତୋଳାଇ ସେଠାରେ ବାପର ପ୍ରତିମୂର୍ତ୍ତି ବସାଇ ନିତ୍ୟେ ପିତୃଭକ୍ତି କରିଥିବାରୁ ନିଜର ପ୍ରତିମୂର୍ତ୍ତି ମଧ୍ୟ ତାହାର ଗୋଡ଼ତଳେ ବସାଇ ଦେଇଅଛି ଯେ, ତା ଅଦ୍ୟାବଧି ରହିଅଛି । ଅରେ ଅବୋଲକରା, ଶୁଣିଲୁ ତ କଥାର ମୂଳ । ଉଠି ଧରି ଉଠ ଯିବା ଚଞ୍ଚଳ ।

---

## ପକ୍ଷୀତୀର୍ଥ କଥା

ସାମନ୍ତ ଅବୋଲକରକୁ ସଙ୍ଗରେ ଧରି ସେଠାରୁ ଯାଉଁ ଯାଉଁ ଗୋଟିଏ ଦେଶରେ ପହଞ୍ଚିଲେ । ସେ ଦେଶର ଲୋକଗୁଡ଼ାକ ତେଲ୍‌ଗୁ ବିନା ଅନ୍ୟ କିଛି ଭାଷା ଜାଣନ୍ତି ନାହିଁ । ଭାଷା ନ ବୁଝିବାରୁ ବଡ଼ ଅଡୁଆ ପଡ଼ିଲା । ହେଲେ ମଧ୍ୟ କଣ କରିବେ ? ପକ୍ଷୀତୀର୍ଥ ନାମକ ଗୋଟିଏ ମନୋହର ଜାଗା ଥିଲା, ସେହିଠାରେ ବସା ପାଇଲେ । ସେ ଦିନ ଅଉ ରୋଷେଇ ନ କରି ପାରି ଝୁଲାରୁ ଚୂଡ଼ା, ଛତୁଆ, ଶନି ବାହାର କରି ଜଳଖିଆ କଲେ । ହାଲିଆ ଲାଗିଥିବାରୁ ସାମନ୍ତ ମୃଗଛାଲ ଉପରେ ଟିକିଏ ବିଶ୍ରାମ କରୁଅଛନ୍ତି, ଦିନ ଦୁଇପ୍ରହରରୁ ଅଧିକ ହୋଇଗଲାଣି । ଅବୋଲକରା ବସି ତାଙ୍କର ଗୋଡ଼ ମେଞ୍ଜୁଅଛି; ଏହି ସମୟରେ ସେ ଦେଖିଲା ଯେ, ସେହି ନିକଟରେ ଗୋଟିଏ ବଡ଼ ଅଳର୍ମଶିଳା ପଥର ଅଛି । ସେ ପଥରଟା ତିନିଶହ ହାତ ଉଚ୍ଚ । ତାହାର ଉଚ୍ଚ ଯେତିକି ଓସାର ସେତିକି ହେବ । ସେଠାର ସେବକ ଜଣେ କମା ବ୍ରାହ୍ମଣ । ସେ ଦହିଭାତ ହାଣ୍ଡିଏ ନେଇ ସେ ପଥର ଉପରକୁ ଉଠିଯାଇ ସେ ଭାତହାଣ୍ଡିକି ଦୁଇଭାଗ କରି ସେ ଉପରେ ବାଢ଼ିଦେଲା । ତହିଁପରେ ଟିକିଏ ଗଲାଉତ୍ତାରୁ ଆକାଶ ମାର୍ଗରେ ଯୋଡ଼ିଏ ଶ୍ୟେନ ପକ୍ଷୀ ଉଡ଼ିଆସି ସେହି ପଥର ଉପରେ ବସିଲେ । ସେବକ ବ୍ରାହ୍ମଣ ଯେଉଁ ଦହିଭାତ ଦୁଇଠାରେ ବାଢ଼ି ଦେଇଥିଲା, ତାକୁ ସେ ଦୁଇ ପକ୍ଷୀ ଖାଇଦେଇ ପୁଣି ଉଡ଼ିଗଲେ । ଏହା ଦେଖି ଅବୋଲକରା ସାମନ୍ତଙ୍କୁ ପଚାରିଲା; ଗୋସେଇଁ କହିଲ ଏ କଥା କଅଣ ? ଏ ପକ୍ଷୀଯୋଡ଼ାକ କେଉଁଠାରୁ ଆସିଲେ; ଏ କାହିଁକି ଏପରି ଆସି ଖାଉଅଛନ୍ତି । ପ୍ରତିଦିନ କାହିଁକି ତାଙ୍କୁ ଦହିଭାତ ଦିଆ ହେଉଅଛି ? ଏପରି କିଏ ଖଞ୍ଜାଇ ଅଛି ? ଏଥିର ମୂଳକାରଣ ମୋତେ ବୁଝାଇ

ହୁଅ । ସାମନ୍ତ ବୋଇଲେ—ଏ ତ ସତ୍ୟଯୁଗର କଥା, ମୂଳରୁ କହିଲେ ଡେରି ଲାଗିବ । ଯାହା ହେଉ ତୁ ଯେବେ ଶୁଣିବୁ ବୋଲି ଅଛୁ ତେବେ ସଂକ୍ଷେପରେ କହିଦେବା । ଏତେ କହି ସାମନ୍ତ ବୋଇଲେ—ପଢା ଭଲ ପୋତ ଛଡା । ବସ ଅବୋଲକରା ଶୁଣୁ କଥା । ପୂର୍ବକାଳରେ ପ୍ରହ୍ଲାଦବଂଶରେ ପ୍ରହେତ ବୋଲି ଗୋଟେ ବଡ଼ ଦୁଷ୍ଟ ଅସୁର ଜନ୍ମ ହେଲା । ସେ ଅସୁର କଥା କଣ କହିବା—ତାର ଦେହଟା ପର୍ବତପର । ସେ ଏଡ଼େ ବଳୁଆ ଯେ ମନକଲେ ପୃଥିବୀଟାକୁ ଉପାଡ଼ି ଫିଙ୍ଗିଦେବ । ସେ କଠୋର ତପକରି ବ୍ରହ୍ମାଙ୍କଠାରୁ ବର ପାଇ ତ୍ରିପୁର ଜିଣିଲା । ତା ଭୟରେ ଦେବତାମାନେ ସ୍ୱର୍ଗ ଛାଡ଼ି ପର୍ବତ କନ୍ଦରା ଭିତରେ ଲୁଚିଥାନ୍ତି । ବ୍ରାହ୍ମଣମାନେ ହୋମ ଯାଗ କରି ପାରିଲେ ନାହିଁ । ସେ ଦୁଷ୍ଟର ବାହୁବଳରେ ପ୍ରତାପୀ ହୋଇ ଅସୁରଗଣ ତ୍ରିପୁରର ସିରି ଭୋଗ କଲେ । ଏହିପରି କେତେକାଳ ବିତିଗଲା ପରେ ତ୍ରିଭୁବନ ଛାରଖାର ହେବାର ଦେଖି ଦେବତାମାନେ ସେ କଥା ଯାଇଁ ବ୍ରହ୍ମାଙ୍କୁ କହିଲେ । ବ୍ରହ୍ମା ବୋଇଲେ, ସେ ଅସୁର ମୋଠାରୁ ବର ପାଇ ବଳୁଆ ହୋଇଅଛି । ତୁମ୍ଭେମାନେ ଯୁଦ୍ଧ କଲେ ତାକୁ ମାରି ପାରିବ ନାହିଁ । କେବଳ ତୁମ୍ଭେ ଯାଇ ଗରୁଡ଼ଙ୍କୁ କହିବ ବୋଇଲେ ସେ ଖଣ୍ଟିହେଲେ ତାକୁ ମାରିଦେଇ ପାରିବେ । ଏହା ଶୁଣି ଦେବତାମାନେ ରମ୍ୟକ ଦ୍ୱୀପକୁ ଯାଇଁ ଗରୁଡ଼ଙ୍କୁ କହିଲେ । ଗରୁଡ଼ ବୋଇଲେ ମୁଁ ସେ ଅସୁରକୁ ମାରିଦେଲେ ତୁମ୍ଭେମାନେ ମୋତେ କଣ ଦେବ ? ଦେବତାମାନେ ବୋଇଲେ, ତୁମ୍ଭେ ତ ବିଷ୍ଣୁଙ୍କ ବାହନ, ତୁମ୍ଭଙ୍କୁ କଣ ଅଭାବ ଅଛି ଯେ ଅମ୍ଭେ ଅବା ତୁମ୍ଭଙ୍କୁ କଣ ଦେଇ ସନ୍ତୁଷ୍ଟ କରିବୁଁ । ମାତ୍ର ତୁମ୍ଭର କୀର୍ତ୍ତି ସବୁକାଳକୁ ଯେପରି ରହିବ, ସେହିପରି ମର୍ତ୍ତ୍ୟଭୁବନରେ ଗୋଟିଏ ତୀର୍ଥ ତୁମ୍ଭ ନାମରେ କରିଦେବୁଁ । ଏହା ଶୁଣି ଗରୁଡ଼ ବଡ଼ ସନ୍ତୁଷ୍ଟ

ହୋଇ କହିଲେ ତୁମ୍ଭେମାନେ ଏତେକ କରଦେଲେ ମୋର ସବୁ ହେବ । ଏବେ ଯାଇଁ ପୂର୍ବପର ଗୁପ୍ତ ସ୍ଥାନରେ ଲୁଚିଥାଅ । ମୁଁ ଅଳ୍ପଦିନ ମଧ୍ୟରେ ତୁମ୍ଭର ଶତ୍ରୁକୁ ମାରିଦେବି । ଏହା ଶୁଣି ଦେବତାମାନେ ଗରୁଡ଼ଙ୍କୁ ନମସ୍କାର କରି ଯେ ଯାହାର ସ୍ଥାନକୁ ଚାଲିଗଲେ । ସେମାନେ ଗଲା ଉତ୍ତାରୁ ଗରୁଡ଼ ମନେ ମନେ ପାଞ୍ଚିଲେ, ମୁଁ କିପରି ଏ ଅସୁରକୁ ମାରିବି ? ଯେବେ ମାରି ନ ପାରିବି ତା ହେଲେ ମୋର ବଡ଼ପଣ ଆଉ ରହିବ ନାହିଁ । ଏମନ୍ତ ଭାବନା କରି କ୍ଷୀର ସମୁଦ୍ରରେ ବିଷ୍ଣୁ ଅନନ୍ତ ଶଯ୍ୟାରେ ଶୋଇଅଛନ୍ତି, ତାଙ୍କ ପାଖରେ ଯାଇଁ ମିଳିଲେ । ବିଷ୍ଣୁ ସେ କଥା ଜାଣିପାରି ନିଦ୍ରାରୁ ଉଠି ପଚାରିଲେ, କିହୋ ଗରୁଡ଼ ! ଦେଶର ହାଲଚାଲ ସବୁ ଭଲ ତ ? ଗରୁଡ଼ ହାତ ଯୋଡ଼ି ବୋଇଲେ—ଭଲ କଥା କିଣ କହିବି । ଦେବତାମାନେ ସ୍ୱର୍ଗ ଛାଡ଼ି ଗିରି କନ୍ଦରରେ ଲୁଚି ଅଛନ୍ତି । ମନୁଷ୍ୟମାନେ ଘରୁ ବାହାରି ପାରୁନାହାନ୍ତି । ପାତାଳ ଲୋକେ ଗାତରେ ପଶିଅଛନ୍ତି । ଋଷିମାନେ ଯଜ୍ଞ ପାସୋରି ଦେଲେ । ଯାହାକୁ ବୋଲନ୍ତି, ଅବିବେକ ହେଲେ ଘର ନାୟକ, ପଥର ମଲଇ ପାରୁଡ଼ାପୋକ । ସେହିପରି ଆପଣ ପୃଥିବୀ ପାଳକ ହୋଇ ନିଶ୍ଚିନ୍ତରେ ଶୋଇଅଛନ୍ତି । ସଂସାରର ଭଲ କିଏ କରିବ ଯେ, ସେ କଥା କେମାନେ କାହାଁକୁ ପଚାରୁ ଅଛନ୍ତି ? ଏହା ଶୁଣି ବିଷ୍ଣୁ ଟିକିଏ ନିର୍ବେଦ ହୋଇ ବୋଇଲେ— ଦିଗପାଳମାନେ, ଭୂପାଳମାନେ, ଗୃହପାଳମାନେ ଥାଉ ଥାଉ ଏପରି ବିପରୀତ କଥା କାହିଁକି ଘଟିଲା ? ଗରୁଡ଼ ବୋଇଲେ, ପ୍ରହେତ ଅସୁର ବ୍ରହ୍ମାଙ୍କଠାରୁ ବର ପାଇ ବଳୀୟାର ହୋଇଛି । ତାକୁ କେହି ମାରି ପାରୁ ନାହାନ୍ତି । ଏଥକୁ ଆପଣ ଶୀଘ୍ର ଉପାୟ ଚିନ୍ତା କରନ୍ତୁ । ବିଷ୍ଣୁ ବୋଇଲେ, ସେ ଯେବେ ବ୍ରହ୍ମାଙ୍କଠାରୁ ବର ପାଇଅଛି ତା ହେଲେ ତାହାର ମୃତ୍ୟୁଭେଦ ନ ପାଇଲେ ଆମ୍ଭ

ମଧ୍ୟ ତାକୁ ମାର ପାରବୁ ନାହିଁ । ତେଣୁ ଲକ୍ଷ୍ମୀଙ୍କୁ ତା୍ ପଚ୍ଚାରଲେ । ଲକ୍ଷ୍ମୀ ବୋଇଲେ—ପାତାଳ ଭୁବନରେ କୁଳିକ ନାଗର ଝିଅ ଅବବାହିତା ହୋଇ ରହିଅଛି । ସେ କନ୍ୟା ଗର୍ଭରେ ଗରୁଡ଼ ଯେବେ ଯୋଡ଼ିଏ ଶ୍ୟେନପକ୍ଷୀ ଜନ୍ମ କରାଇବେ, ତାହା ହେଲେ ସେ ପକ୍ଷୀ ଯୋଡ଼ାକ ଯୁଦ୍ଧ କଲାବେଳେ ତୁମ୍ଭ ପାଖରେ ଥିବେ । ତୁମ୍ଭେ ବାବଲ ଶରରେ ପ୍ରହେତ ଅସୁରକୁ ମୋହକର ପକାଇ ଦେବ । ସେତକ ବେଳେ ସେ ପକ୍ଷୀ ଦୁହେଁ ଉଡ଼ିଯାଇ ସେ ଅସୁରର ଦୁଇ ଭୁଜକୁ ଥଣ୍ଟରେ ଭିଡ଼ି ଉପାଡ଼ି ନେବେ । ଅସୁରର ବାମ ଶିରା ଭିତରେ ଅମୃତ କୁଣ୍ଡଳମା ଅଛି । ସେ ତାହା ବ୍ରହ୍ମାଙ୍କଠାରୁ ପାଇ ସେହିଠାରେ ଗୁପ୍ତ କର ରଖିଅଛି । ଅମୃତ କୁଣ୍ଡଳମା ପ୍ରଭାବରୁ ସେ ମରୁନାହିଁ । ଶ୍ୟେନ ପକ୍ଷୀର ଚଞ୍ଚୁଘାତ ବନା ଅନ୍ୟ କୌଣସି ଅସ୍ତ୍ର ଶସ୍ତ୍ରରେ ତାର ଭୁଜ ଉପୁଡ଼ିବ ନାହିଁ । ତୁମ୍ଭେ ବାବଲ ଶରରେ ତାକୁ ମୋହ କର ପକାଇ ଦେବ । ଶ୍ୟେନପକ୍ଷୀ ଦୁହେଁ ଦୁଇଭୁଜ ଉପାଡ଼ି ନେବେ । ଅମୃତ କୁଣ୍ଡଳମା ଯୋଡ଼ିକ ଖସି ପଡ଼ିଲେ ଗରୁଡ଼ ସେ ଯୋଡ଼ିକୁ ଝାମ୍ପି ନେବ । ତା ହେଲେ ଅସୁର ମରବ । ଏ ତନ୍ତ୍ରକଥାଯାକ ଏକ'ବେଳକେ ନୋହିଲେ ସେ ନ ମରେ । ଏହା କହି ଲକ୍ଷ୍ମୀ ଠାକୁରାଣୀ ଭିତର ପୁରକୁ ଚାଲିଗଲେ । ତହିଁପରେ ଗରୁଡ଼ଙ୍କୁ ଚାହିଁ ବିଷ୍ଣୁ ବୋଇଲେ ଶୁଣିଲ ତ ଲକ୍ଷ୍ମୀ ଯାହା କହିଲେ, ଏବେ କଣ କରବା ବୋଲ । ଗରୁଡ଼ ବୋଇଲେ ଏ ତ ବଡ଼ ବିଷମ କଥା । ନାଗମାନେ ତ ମୋର ଶତ୍ରୁ ଯେ ସେ ମୋତେ ଦେଖିବାମାତ୍ରେ କୁଅଡ଼େ ଲୁଚିବେ ଯେ ତାଙ୍କର ଶଙ୍ଖବର୍ଣ୍ଣ ଦେଖିବ ନାହିଁ । ମୁଁ ଅବା କପର କୁଳିକ ନାଗର ଝିଅକୁ ପାଇବି ଯେ ତା ଗର୍ଭରେ ଶ୍ୟେନ ପକ୍ଷୀ ଜନ୍ମ କରାଇବ । ବିଷ୍ଣୁ ବୋଇଲେ, ତୁମ୍ଭେ ନିଜ ରୂପକୁ ଲୁଚାଇ ଦେଇ ମାୟାରେ ଗୋଟିଏ ରାଜପୁତ୍ର ବେଶ ଧର ପାତାଳପୁରକୁ

ଯାଅ । ସେଠାରେ ଭୋଗବତୀ ନାମରେ ଗୋଟିଏ ପୁଣ୍ୟ ନଦୀ ବହୁଅଛି । ସେ ନଦୀରେ ସ୍ନାନ କରିବାକୁ ନାଗକନ୍ୟାମାନେ ପ୍ରତିଦିନ ଆସନ୍ତି । ତୁମ୍ଭେ ସେହିଠାରେ ବାସ କରି ରହିଲେ ନିଶ୍ଚେ ସେ କନ୍ୟାକୁ ପାଇବ । ଏହା ଶୁଣି ଗରୁଡ଼ ଯେ ଅଛି କହି ଅତି ସୁନ୍ଦର ରାଜପୁତ୍ର ବେଶ ଗୋଟିଏ ଧରି ପାତାଳପୁରକୁ ଗଲେ । ସେଠାକୁ ଯାଇ ବିଷ୍ଣୁ କହିଥିବା ପ୍ରକାରେ ଭୋଗବତୀ ନଦୀର ଘାଟ ନିକଟରେ ବସାକରି ରହିଥାନ୍ତି । ଦଇବରେ ରବିବାର ଓଷା ପୂଜିବାକୁ ଅନେକ ନାଗକନ୍ୟା ସେଠାକୁ ଆସି ନାନା କୌତୁକରେ ଓଷା ପୂଜା କଲେ । କୁଳକ ନାଗକନ୍ୟା ନାମ ବିଦ୍ୟୁତପ୍ରଭା । ସେ ମଧ୍ୟ ତାଙ୍କ ସଙ୍ଗେ ଓଷା ପୂଜିବାକୁ ଆସିଥିଲା । ପୂଜା ଶେଷରେ ବାହୁଡ଼ିଲା ବେଳକୁ ତା ଦୃଷ୍ଟି ସେହି କପଟ ବେଶଧାରୀ ରାଜପୁତ୍ର ଉପରେ ପଡ଼ିଲା । ଗରୁଡ଼ ତ ବିଷ୍ଣୁଙ୍କ ଆଜ୍ଞାରେ ମନୋହର ରୂପ ଧରିଥିଲା, ତାଙ୍କର ସୌନ୍ଦର୍ଯ୍ୟ ଦେଖି ସେ କନ୍ୟାର ପାଦ ଚଳିଲା ନାହିଁ । ତେଣୁ ସଖୀମାନଙ୍କୁ କହିଲା, ମୋର ବେକରୁ ମଣିରତ୍ନ ହାରଟି କୁଆଡ଼େ ପଡ଼ିଗଲା, ମୁଁ ଯାଉଛି ଖୋଜିବି । ତୁମ୍ଭେମାନେ ଟିକିଏ ଥାଅ, ନୋହିଲେ ଚାଲିଯାଅ । ମୁଁ ହାରଟି ପାଇଲେ ଯିବି । ଏହା ଶୁଣି ସେମାନେ ବୋଇଲେ, ତୋର ତୁ ହାର ଖୋଜୁଥା, ଆମେ ଯାଉଛୁ; ଏତେ ବୋଲି ସେମାନେ ଚାଲିଗଲେ । ବିଦ୍ୟୁତପ୍ରଭା ହାର ଖୋଜିବ କଣ ? ହାର ବଦଳରେ ନାଗର ଖୋଜିବାକୁ ଯାଇ ସେହି ରାଜପୁତ୍ର ନିକଟରେ ମିଳିଲା । ଦୁହେଁ ଦୁହିଙ୍କ ରୂପରେ ମୋହିତ ହୋଇ ଗାନ୍ଧର୍ବ ମତରେ ବିଭାହୋଇ ପଡ଼ିଲେ । କ୍ଷୀରରେ ନୀର ମିଶିଲା ପରି ଦୁହିଙ୍କର ମନ ମିଳି ଯିବାରୁ ଦୁହେଁ ନାନାଦି କୌତୁକରେ ବିହାର କଲେ । ଗରୁଡ଼ ତ ବ୍ରହ୍ମଯତି ଅଟନ୍ତି । ତାଙ୍କ ସହିତ ବିହାର କରିବାରୁ ସେ କନ୍ୟା ଗର୍ଭବତୀ ହୋଇ ସେହିକ୍ଷଣି ଯୋଡ଼ିଏ ଶ୍ୟେନ ପକ୍ଷୀ ଜନ୍ମ କଲା ।

ତାହା ଦେଖି ବିଦ୍ୟୁତପ୍ରଭା ଚକିତ ହୋଇ ସେ ରାଜପୁତ୍ରଙ୍କୁ ପଚାରିଲା, ତୁମ୍ଭେ କିଏ ? ମୁଁ ତୁମ୍ଭର କୁଳଗୋତ୍ର ନ ଜାଣି ତୁମ୍ଭ ସଙ୍ଗେ ପ୍ରୀତି କଲି ଯେ ଏବେ ବଡ଼ ହଟହଟା ହେବା ପରି । ତୁମ୍ଭେ ଯେବେ ମନୁଷ୍ୟ ଜାତି ହୋଇ ଥାନ୍ତ ତା ହେଲେ ତୁମ୍ଭ ଔରସରେ ପକ୍ଷୀ ସନ୍ତାନ ଯେ ଉଏ କାହିଁକି ଜନ୍ମ ହୁଅନ୍ତେ ? ଏହା ଶୁଣି ଗରୁଡ଼ ନିଜ ରୂପଧରି ବୋଇଲେ—ପ୍ରିୟେ ! ମୁଁ ପକ୍ଷୀରାଜ ଗରୁଡ଼ । ତୁମ୍ଭେ ମୋର ପ୍ରିୟବତୀ ହୋଇ କୃତାର୍ଥ ହୋଇଅଛ । ତୁମ୍ଭର ଏ ପୁତ୍ର ଦୁହେଁ ଦେବକାର୍ଯ୍ୟ କରି ସୃଷ୍ଟି ଥିବାଯାକ ପୂଜା ପାଇବେ । ଏବେ ତୁମ୍ଭେ ଯାଇ ତୁମ୍ଭର ପିତାଙ୍କୁ ଏହି କଥା ଜଣାଅ । ଅଧିକର ତାଙ୍କୁ କହିବ ଗରୁଡ଼ ତୁମ୍ଭଠାରେ ବଡ଼ ପ୍ରସନ୍ନ ହୋଇଅଛନ୍ତି । ଏହା ଶୁଣି ସେ କନ୍ୟା ତତ୍‌କ୍ଷଣେ ଯାଇ କୁଳିକ ନାଗକୁ ଚଳିଥିବା କଥାଯାକ ସବୁ ଜଣାଇଲା । କୁଳିକ ଏ କଥା ଶୁଣିବା ମାତ୍ରେ ବଡ଼ ଆନନ୍ଦିତ ହୋଇ ଅନେକ ସମ୍ଭାର ଘେନି ଗରୁଡ଼ଙ୍କ ନିକଟରେ ମିଳିଲେ । ଗରୁଡ ପିନା ନାଗମାନଙ୍କୁ ଦେଖିଲା ମାତ୍ରେ ଖାଇ ଦେଉଥାନ୍ତି, ଏବେ କୁଳିକ ତାଙ୍କର ଶ୍ୱଶୁର ହେବାରୁ ତାଙ୍କୁ ନମସ୍କାର କରି କହିଲେ—ତୁମ୍ଭେ ଆଉ ମୋତେ ଭୟ କର ନାହିଁ । ମୁଁ ଏହି ସନ୍ତାନ ଯୋଡ଼ିକୁ ନେଇ ଯାଉଅଛୁ ଦେବକାର୍ଯ୍ୟ କରିବା । ତୁମ୍ଭ ଝିଅ ତୁମ୍ଭ ଘରେ ଥାଉ । ଏହା କହି ସେ ଶ୍ୟେନପକ୍ଷୀ ଯୋଡ଼ିକୁ ଆଣି ବିଷ୍ଣୁଙ୍କ ନିକଟରେ ମିଳିଲେ । ଗରୁଡ଼ ସଙ୍ଗରେ ଶ୍ୟେନପକ୍ଷୀ ଯୋଡ଼ିକୁ ଦେଖି ବିଷ୍ଣୁ ଅତି ଆନନ୍ଦିତ ହୋଇ ପଚାରିଲେ—କି ହୋ ଗରୁଡ଼, "କାର୍ଯ୍ୟସିଦ୍ଧି ହେଲା କି ?" ଗରୁଡ଼ ବୋଇଲେ, ଆପଣଙ୍କ ଆଜ୍ଞାରେ କଣ ହୋଇ ନ ପାରେ ଯେ ଏ ଗୋଟେ ବଡ଼ କଥା କି ? ଏବେ ମୋ କନ୍ଧରେ ବିଜେକରି, ଅସୁରଙ୍କୁ ବଧ କରି ପୃଥ୍ୱୀଭାର ଉଣ୍ଲାସ କରିବା । ଏହା ଶୁଣି ପ୍ରଭୁ ଗରୁଡ଼ କନ୍ଧରେ ବିଜେ କଲେ । ଶ୍ୟେନପକ୍ଷୀ ଦୁହେଁ

ତାଙ୍କ ସଙ୍ଗେ ସଙ୍ଗେ ଥାନ୍ତି । ବିଷ୍ଣୁ ପ୍ରଚଣ୍ଡ ଅସୁରର ରାଜଧାନୀ ନିକଟକୁ ଯାଇ ଶଙ୍ଖ ଧ୍ୱନି କଲେ । ତାହା ଶୁଣି ପ୍ରଚଣ୍ଡ କ୍ରୋଧରେ ପ୍ରଜ୍ୱଳିତ ହୋଇ ଅସୁରଗଣଙ୍କୁ ଧରି ଯୁଦ୍ଧ କରିବାକୁ ବାହାରିଲା । ବିଷ୍ଣୁ ତାଙ୍କର ଚକ୍ରକୁ ପେଷି ଦେଲେ ଯେ ଅସୁର ସୈନ୍ୟରେ ଯେତେ ବଡ଼ ବଡ଼ ଯୋଦ୍ଧା ଥିଲେ ତାଙ୍କର ମୁଣ୍ଡଯାକ ସେ ଚକ୍ର କାଟି ପକାଇଲା । ବାକୀ ଥୋକେ ଅସୁର ଚକ୍ରର ତେଜ ନ ସହି ପ୍ରାଣ ବିକଳରେ ପଳାଇ ଗଲେ । ତାହା ଦେଖି ପ୍ରଚଣ୍ଡ ଚନ୍ଦ୍ରଙ୍କୁ ରଥ ଘୋଟିଲା ପରି ବିଷ୍ଣୁଙ୍କୁ ଘୋଟି ଆସିଲା । ଅସୁର ରାଜାର ପ୍ରତାପ ଦେଖି ବିଷ୍ଣୁ ବାବଲି ଶର ପ୍ରହାର କରି ତାକୁ ମୋହ କରି ପକାଇ ଦେଲେ । ସେତିକିବେଳେ ଶ୍ୟେନପକ୍ଷୀ ଦୁହେଁ ଉଡ଼ିଯାଇ ତାର ଭୁଜ ଯୋଡ଼ାକୁ ଥଣ୍ଟରେ ଉପାଡ଼ି ନେଇ ଉଡ଼ି ପଳାଇଲେ । ଭୁଜ ଦୁଇଟା ଉପୁଡ଼ି ଯିବାରୁ ତାର କାଖ ସନ୍ଧିରୁ ଅମୃତକୁଣ୍ଡଳୀ ଯୋଡ଼ିକ ଖସି ପଡ଼ିଲା । ଗରୁଡ଼ ତ ପୂର୍ବରୁ ଜାଣିଥିଲେ, ସେ ତତକ୍ଷଣେ ଝାମ ଦେଇ ସେ ଗୁଡ଼ିକ ନେଇ ଗିଳିଦେଲେ । ପ୍ରଚଣ୍ଡ ଅସୁର ପ୍ରାଣ ଛାଡ଼ି ପର୍ବତ ପରି ପଡ଼ିରହିଲା । ପ୍ରଚଣ୍ଡ ମରିବାରୁ ଦେବଗଣ ଭୟ ଛାଡ଼ି ପର୍ବତ କନ୍ଦରରୁ ଆସି ସେଠାରେ ରୁଣ୍ଡ ହେଲେ । ସମସ୍ତେ ମିଳି ବିଷ୍ଣୁଙ୍କୁ ପୂଜା କଲେ । ଗରୁଡ଼ କହିଲେ ଏହି ଶ୍ୟେନପକ୍ଷୀ ଯୋଡ଼ିକ ମୋର ପୁଅ ଅଟନ୍ତି । ଏ ଦୁହିଁଙ୍କ ଯୋଗରେ ଦେବକାର୍ଯ୍ୟ ସିଦ୍ଧ ହେଲା । ଏହାଙ୍କ ନାମରେ ଗୋଟିଏ ତୀର୍ଥ କର । ଏ ଦୁହେଁ ଯୁଗେ ଯୁଗେ ଥାଇ ସେହି ତୀର୍ଥରେ ପୂଜା ପାଉଥାନ୍ତୁ । ଏହାଙ୍କ ତୀର୍ଥକୁ ଯେଉଁ ଲୋକ ଦର୍ଶନ କରିବ ସେ ବୈକୁଣ୍ଠ ଯିବ ବୋଲି ପ୍ରଭୁ ଆଜ୍ଞା ଦିଅନ୍ତୁ । ଗରୁଡ଼ ଏପରି କହିବା ମାତ୍ରେ ଦେବଗଣ ଏଠାକୁ ଆସି ଏହି ତୀର୍ଥ ନିର୍ମାଣ କଲେ । ଏହି ଅକର୍ମଶିଳା ମଧ୍ୟ ସ୍ଥାପନ କଲେ । ପକ୍ଷୀ ଯୋଡ଼ିକ ପାଇଁ ଭୋଗ ବାନ୍ଧିଦେଲେ । ବିଷ୍ଣୁଙ୍କ ଆଜ୍ଞାରେ

ସେହି ଶ୍ୟେନପକ୍ଷୀ ଦୁହେଁ ଚିରଞ୍ଜୀବୀ ହୋଇ ଅଦ୍ୟାବଧି ଭୋଗ ଖାଉଅଛନ୍ତି । ଏ ତୀର୍ଥରେ ଯେଉଁ ଲୋକ ଅହୋରାତ୍ର ବାସ କରେ ସେ ବିଷ୍ଣୁଙ୍କ ଅଙ୍କରେ ବୈକୁଣ୍ଠକୁ ଯିବ । ଅରେ ଅବୋଲକରା ତୁ ଯାହା ପଚାରିଲୁ ସେ କଥାର ଅର୍ଥ ଶୁଣିଲୁ । ଏଠାରେ ପକ୍ଷୀତୀର୍ଥ କଥା ଶେଷ ହେଲା । ଏ କଥା ଏତିକି, ଫୁଲ ଫୁଟେ କେତକୀ ।

---

## ସେତୁବନ୍ଧ କଥା

ପକ୍ଷୀତୀର୍ଥରେ ତିନିଦିନ ବାସ କରି ସାମନ୍ତ ଅବୋଲକରାକୁ ଧରି ସେଠାରୁ ଚାଲିଗଲେ । ଯିବା ବାଟରେ ଅନେକ ତୀର୍ଥ, ଦେବାୟତନ, ପୁର ଗ୍ରାମ ନଦୀ ଓ ପର୍ବତ ଦେଖି ଦେଖି ଯାଇ ସେତୁବନ୍ଧରେ ପହଞ୍ଚିଲେ । ସେଠାରେ ବସାପାଡ଼ି ଧନୁଷ୍କୋଟୀ ତୀର୍ଥରେ ସ୍ନାନ ତର୍ପଣ କରି ରାମେଶ୍ୱରଙ୍କୁ ତୀର୍ଥ ଜଳ ଚଢ଼ାଇଲେ; ତହିଁପରେ ରୋଷାଇବାସ କରି ଖିଅପିଅ କଲେ । ସାମନ୍ତ ସୁସ୍ଥ ହୋଇ ବସିଅଛନ୍ତି, ସେତିକିବେଳେ ଅବୋଲକରା ବିନୟରେ ହାତ ଯୋଡ଼ି ତାଙ୍କୁ ପଚାରିଲା ଗୋସେଇଁ, ମୁଁ ତୁମ୍ଭ ସଙ୍ଗରେ ଆସି ଅନେକ ତୀର୍ଥରେ ସ୍ନାନ କଲି । ନାନା ଆଶ୍ଚର୍ଯ୍ୟ କଥା ଦେଖିଲି । ଅନେକ ପୁରାତନ କଥା ଶୁଣିଲି । ବାଟପାଇଁ ନାନା କଥା ପଚାରି ପଚାରି ତୁମ୍ଭଙ୍କୁ ବହୁତ ହଇରାଣ କରିଅଛି । ଆପଣ ଦୟା ପୂର୍ବକ ମୋର ସେ ସବୁ ଦୋଷ କ୍ଷମାକରି ଏହି ସେତୁବନ୍ଧର ମହିମା କିଛି ମୋତେ କହନ୍ତୁ । ତୀର୍ଥ ଦର୍ଶନ ଶେଷ ହେଲା । ଏଠାରୁ ଘରକୁ ବାହୁଡ଼ି ଯିବା । ଘରକୁ ଗଲେ ସତେ କଣ ଆପଣଙ୍କ ମୁଖରୁ ମୁଁ ଆଉ କିଛି ଶୁଣି ପାରିବି କି ?

ଏହା ଶୁଣି ସାମନ୍ତ ସନ୍ତୁଷ୍ଟ ହୋଇ ବୋଇଲେ—ପକା କମ୍ବଳ ପୋତ ଛତା, ବସ ଅବୋଲକରା ଶୁଣ କଥା । ଅଯୋଧ୍ୟାର ରାଜପୁତ୍ର ରାମଚନ୍ଦ୍ର, ତାଙ୍କ ପିତା ଦଶରଥଙ୍କ ଅଜ୍ଞାରେ ଭାଇ ଏବଂ

ଭାରିଯାଙ୍କ ସଙ୍ଗେ ଘେନି ବନବାସ କରିଥିଲେ । ତାଙ୍କ ଭାରିଯାଙ୍କ ନାମ ସୀତା । ସେ ବଡ଼ ସୁନ୍ଦରୀ । ତାଙ୍କୁ ଲଙ୍କାର ରାବଣ ଚୋରାଇ ନେବାରୁ ସେହି ରାବଣକୁ ମାରିବା ପାଇଁ ରାମଚନ୍ଦ୍ର ଭାଲୁ ଓ ମାଙ୍କଡ଼ମାନଙ୍କୁ ସଙ୍ଗେ ଘେନି ଲଙ୍କାକୁ ଯିବା ସକାଶେ ଏହି ବାଟେ ଆସିଲେ । ଯେଉଁଦିନ ସେତୁବନ୍ଧ ଆରମ୍ଭ ହେଲା ସେଦିନ ପ୍ରଥମେ ରାମଚନ୍ଦ୍ର ଏହି ଶିବଲିଙ୍ଗ ବସାଇ ଏହାଙ୍କୁ ନାନାଦି ଉପଚାର ଦେଇ ପୂଜା କଲେ । ପୂଜାରେ ସନ୍ତୁଷ୍ଟ ହୋଇ ସ୍ୱୟଂ ମହାଦେବ ଆସି ରାମଚନ୍ଦ୍ରଙ୍କୁ କହିଲେ—ତୁମ୍ଭେ ମର୍କଟ-ମାନଙ୍କ ହସ୍ତରେ ସେତୁବନ୍ଧ ବନ୍ଧାଇ, ଅନାୟାସରେ ଅସୁର-ବଳ ସହିତ ରାବଣକୁ ବିନାଶ କରି ତୁମ୍ଭର ପ୍ରିୟବତୀ ସୀତାଙ୍କୁ ପାଇବ । ରାମେଶ୍ବର ବୋଲି ତୁମ୍ଭ ନାମରେ ଏହି ଶମ୍ଭୁ ବିଖ୍ୟାତ ହେବ । ଯେଉଁ ଲୋକ ସମୁଦ୍ରରେ ସ୍ନାନ କରି ରାମେଶ୍ବରଙ୍କୁ ଦର୍ଶନ କରିବ, ତାର ଜନ୍ମଜନ୍ମାନ୍ତର ପାପ ବିଧ୍ୱଂସ ହେବ । ଯେଉଁ ଲୋକ ପ୍ରୟାଗରୁ ତୀର୍ଥଜଳ ଆଣି ତହିଁରେ ରାମେଶ୍ବରଙ୍କୁ ଅଭିଷିକ୍ତ କରିବ, ସେ ସକଳ ପାପରୁ ଉଦ୍ଧାର ହୋଇ ବ୍ରହ୍ମଲୋକକୁ ଯିବ । ଏଥିରେ ସନ୍ଦେହ ନାହିଁ । ଏହା କହି ମହାଦେବ ସେହି ଲିଙ୍ଗରେ ଅନ୍ତର୍ଦ୍ଧାନ ହେଲେ । ତହିଁପରେ ରାମଚନ୍ଦ୍ର ସମୁଦ୍ରରେ ସେତୁବନ୍ଧ ବନ୍ଧାଇ ରାବଣକୁ ସବଂଶରେ ବଧକରି ସୀତାଙ୍କୁ ନେଇ ନିଜ ରାଜ୍ୟକୁ ଗଲେ । ସେଦିନଠୁ ସେତୁବନ୍ଧ ରାମେଶ୍ବର ନାମରେ ତ୍ରିଭୁବନରେ ବିଖ୍ୟାତ ହେଲା । ଅନେକ ଲୋକ ଏହି ପୁଣ୍ୟ ତୀର୍ଥରେ ସ୍ନାନ ଓ ରାମେଶ୍ବରଙ୍କୁ ଦର୍ଶନ କରି ଦିବ୍ୟଗତି ଲାଭ କରୁଅଛନ୍ତି । ଆମ୍ଭ ତୁହଙ୍କର ପୂର୍ବଭାଗ୍ୟ ଥିବାରୁ ଏଠାକୁ ଆସି ରାମେଶ୍ବରଙ୍କୁ ଦର୍ଶନ କଲେ । ଏହି ତୀର୍ଥ ମହିମା ବିଷୟରେ ମୁଁ ଗୋଟିଏ ପୁରାତନ

ଇତିହାସ ଶୁଣିଅଛୁ, ତାହା ତୋ ଆଗରେ କହୁଅଛୁ ଶୁଣ। ପୂର୍ବକାଳରେ ଏହି ପୃଥିବୀରେ ଶତଧନୁ ନାମକ ଜଣେ ବିଖ୍ୟାତ ରାଜା ଥିଲେ। ତାଙ୍କ ରାଣୀର ନାମ ଶୈବ୍ୟା। ସେ ପତିବ୍ରତା, ମହା ଭାଗ୍ୟବତୀ ଏବଂ ଧର୍ମପରାୟଣା ଥିଲେ। ତାଙ୍କଠାରେ ସର୍ବ-ସୁଲକ୍ଷଣ ପୂରି ରହିଥିଲା। ଗୁଣ ଯେଉଁପରି ରୂପ ତାଠାରୁ ଅଧିକ। ସେ ରାଣୀ ସର୍ବଦା ପତିପରାୟଣା ହୋଇ ଧର୍ମ ମାର୍ଗରେ ମନ ଦେଇଥାନ୍ତି। ଶତଧନୁ ରାଜା ସେହି ରାଣୀଙ୍କୁ ସଙ୍ଗେ ନେଇ ପ୍ରତିଦିନ ବିଷ୍ଣୁଙ୍କୁ ପୂଜା କରନ୍ତି। ଅହୁରି ବିଷ୍ଣୁଙ୍କ ଚରଣାରବିନ୍ଦରେ ଭକ୍ତି କରି ଜପ, ଦାନ, ଉପବାସ, ହୋମ, ଅତିଥିପୂଜା କରୁଥାନ୍ତି। ଏହା ଛଡ଼ା ଅନ୍ୟ ବିଷୟରେ ତାଙ୍କର ମନ ନ ଥାଏ। ଏହିପରି କେତେକାଳ ଗଲାପରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ସେ ଦୁହେଁ ଗଙ୍ଗାନଦୀରେ ସ୍ନାନକରି ବାହୁଡ଼ି ଆସିଲା ବେଳକୁ ଜଣେ ନାସ୍ତିକବାଦୀ ପାଷାଣ୍ଡ ଆସୁଥିଲା, ତାକୁ ଦେଖିଲେ। ଶତଧନୁ ରାଜା ଯାହାଠାରୁ ଧନୁର୍ବିଦ୍ୟା ଶିକ୍ଷା କରିଥିଲେ ତାହାର ସେ ପଷାଣ୍ଡଟି ମିତ୍ର ଅଟେ। ତେଣୁ ବିଦ୍ୟାଗୁରୁଙ୍କର ମିତ୍ର ବୋଲି ଗୌରବ ରଖି ଶତଧନୁ ସେହି ପାଷାଣ୍ଡ ସହିତ ଦୁଃଖ ସୁଖ, କଥାବାର୍ତ୍ତା ହେଲେ। ବ୍ରତୀମାନେ ପାଷଣ୍ଡର ମୁଖ ଚାହିଁ ତା ସହିତ କଥାବାର୍ତ୍ତା ହେଲେ ତାଙ୍କର ଧର୍ମ ନଷ୍ଟ ହୋଇଯାଏ ବୋଲି ଜାଣିଥିବାରୁ ରାଣୀ ତାକୁ ନ ଚାହିଁ ସୂର୍ଯ୍ୟଙ୍କୁ ଚାହିଁ ମୌନ ହୋଇ ରହିଲେ। ରାଜା ସେ ପାଷାଣ୍ଡ ସହିତ କଥାବାର୍ତ୍ତା ଶେଷ କରି ଫେରିବାରୁ ରାଣୀ ରାଜାଙ୍କ ସଙ୍ଗେ ଘରକୁ ଆସିଲେ।

ତହିଁପରେ ସେ ପତି ପତ୍ନୀ ବିଧି ଅନୁସାରେ ବିଷ୍ଣୁ ପୂଜା ହୋମ, ଦାନ, ଅତିଥି ସତ୍କାର ପ୍ରଭୃତି ଯାହା କିଛି କର୍ତ୍ତବ୍ୟକର୍ମ ତାହା ସବୁ ଶେଷକରି ଆନନ୍ଦରେ ରହିଲେ। କେତେକ ଦିନ ଗଲାପରେ ରାଜାଙ୍କର ଆୟୁଷ ଶେଷ ହେବାରୁ ସେ ମରିଗଲେ।

ସ୍ୱାମୀ ମୃତ ହେବା ଦେଖି ଶୈବ୍ୟା ରାଣୀ ରାଜାଙ୍କ ଚିତା ଅଗ୍ନିରେ ପଡ଼ି ଦେହ ତ୍ୟାଗ କଲେ । ରାଜା କାର୍ତ୍ତିକ ପୂର୍ଣ୍ଣିମାରେ ଉପବାସ କରି ପାଷାଣ୍ଡ ସହିତ କଥାବାର୍ତ୍ତା ହୋଇଥିବା ପାପରୁ କୁକୁର ହୋଇ ଜନ୍ମିଲେ । ରାଣୀ ତାହା ନ କରିଥିବାରୁ ସେ ସୁକୃତବଳକୁ ପାଇ କାଶୀଦେଶ ରାଜାଙ୍କର ଝିଅ ହୋଇ ଜନ୍ମ ହେଲେ । ସେ ଜନ୍ମରେ ତାଙ୍କୁ ପୂର୍ବ ଜନ୍ମର କଥାସବୁ ଜଣା ପଡୁଥିଲା । ସେ ରୂପ, ଗୁଣ ଏବଂ ସୁଲକ୍ଷଣରେ ପୂର୍ଣ୍ଣ ହୋଇ ପିତା ମାତାଙ୍କର ଆନନ୍ଦ ବଢ଼ାଇଲେ । କେତେ ଦିନ ଉତ୍ତାରେ ସେ କନ୍ୟା ଯୁବତୀ ହେବାରୁ ତାଙ୍କ ପିତା କାଶୀରାଜ ତାଙ୍କୁ ବାହା କରାଇବା ପାଇଁ ବର ଖୋଜାଇଲେ । ତାହା ଶୁଣି ସେ କନ୍ୟା ପିତାଙ୍କୁ କହିଲେ, ତୁମ୍ଭେ ମୋ ସକାଶେ ବରପାତ୍ର ଖୋଜିବାକୁ ବ୍ୟସ୍ତ ହୁଅନାହିଁ । ବର୍ତ୍ତମାନ ବାହା ହେବାକୁ ମୋର ଇଚ୍ଛା ନାହିଁ । ଯେତେବେଳେ ମୋର ଇଚ୍ଛା ହେବ ମୁଁ ସେତେବେଳେ କହିବି । ଏହା ଶୁଣି କାଶୀରାଜା ଆଉ ବର ଖୋଜାଇଲେ ନାହିଁ କି ଝିଅକୁ ବାହା କରାଇବା ବୋଲି ନା ଧରିଲେ ନାହିଁ । ତହିଁପରେ ସେ ରାଜକନ୍ୟା ଦିବ୍ୟ ଚକ୍ଷୁରେ ଚାହିଁଲେ ଯେ, ତାଙ୍କ ପତି ( ଶତଧନୁ ରାଜା ) ମୃତ ହେଲାପରେ ଗୋଟିଏ କୁକୁର ହୋଇ ବିଦିଶା ନଗରରେ ଜନ୍ମ ହୋଇଅଛନ୍ତି । ତାହା ଜାଣିବାମାତ୍ରେ ସେ କନ୍ୟା ବିଦିଶାନଗରୀକି ଯାଇ ସେହି କୁକୁରକୁ ଦେଖିଲେ । ଜ୍ଞାନବଳରୁ ଏହି କୁକୁର ମୋର ସ୍ୱାମୀ ବୋଲି ଜାଣିପାରି ତାଙ୍କୁ ଆଦର କରି ଖାଇବାକୁ ଉତ୍ତମ ଭୋଜନ ଦେଲେ । କୁକୁରମାନଙ୍କର ଜାତିଗତ ସ୍ୱଭାବ ଅଛି ଯେ, ସେ ଯାହାର ଖାଇବେ ତାର ପଛେ ପଛେ ଗୋଡ଼ାଇବେ । ଏ କୁକୁର ମିଷ୍ଟାନ୍ନ ଖାଇବାରୁ ରାଜକନ୍ୟାର ପଛେ ପଛେ ଗୋଡ଼ାଇ ସ୍ୱଜାତି ଯୋଗ୍ୟ ବୃତ୍ତି ପ୍ରକାଶ କରିବାକୁ ଲାଗିଲା । ସ୍ୱାମୀର ସେ ଚେଷ୍ଟା ଦେଖି

କାଶୀରାଜ ଦୁହିତା ଅତି ଲଜ୍ଜିତା ହୋଇ ତହିଁପରେ ତାଙ୍କୁ ନମସ୍କାର କରି କହିଲେ—ମହାରାଜ ! ତୁମ୍ଭେ ଗୁରୁର ସଖା ବୋଲି ପାଷାଣ୍ଡ ସହିତ ଗଙ୍ଗାତୀରରେ ଯେଉଁ ମିଷ୍ଟାଳାପ କରିଥିଲ ସେହି ପାପରୁ ଏବେ କୁକୁର ଯୋନିରେ ଜନ୍ମ ହୋଇଅଛ, ସେ ଜନ୍ମରେ ମୁଁ ତୁମ୍ଭର ରାଣୀ ହୋଇଥିଲି । ମୋର କିଛି ପାପ ନ ଥିବାରୁ ମୁଁ ଏବେ କାଶୀଦେଶ ରାଜାଙ୍କର ଝିଅ ହୋଇ ଜନ୍ମିଅଛି । ତୁମ୍ଭେ ଗତଜନ୍ମ କଥା ସ୍ମରଣ କର । ତୀର୍ଥ ସ୍ନାନାନ୍ତର ପାଷାଣ୍ଡ ସମ୍ଭାଷଣ ପାପରୁ ଏବେ କୁତ୍ସିତ ଯୋନିରେ ଜନ୍ମ ହୋଇଅଛ ।

ଏହା ଶୁଣି ସେ କୁକୁର ନିର୍ବେଦ ହୋଇ ଘଡ଼ିଏ କାଳ ପର୍ଯ୍ୟନ୍ତ ରହିଲା । ତହିଁପରେ ସେଠାରୁ ଗୁଲିଯାଇ କୋଳାହଳ ନାମକ ଗୋଟିଏ ଉଚ୍ଚ ପର୍ବତ ଉପରେ ଉଠି ପର୍ବତ ଶୃଙ୍ଗ ଉପରୁ ମରୁଭୂମିକି ଡେଇଁ ପ୍ରାଣ ହରାଇଦେଲା । କୁକୁର ଦେହ ଛାଡ଼ି ପୁନରପି ଗୋଟିଏ ଶୃଗାଳ ହୋଇ ସେହି ବନରେ ଜନ୍ମ ଗ୍ରହଣ କଲା । ଏଣେ କାଶୀ ରାଜକନ୍ୟା ପିତା ଗୃହକୁ ଫେରି ଯାଇଥିଲେ । ପୁଣି ବର୍ଷକ ଉତ୍ତାରୁ ଦିବ୍ୟ ଦୃଷ୍ଟିରେ ଗୁହିଁ ଦେଖିଲେ ଯେ, ତାଙ୍କ ସ୍ୱାମୀ କୁକୁର ଦେହ ଛାଡ଼ି ଶୃଗାଳ ରୂପରେ ଜନ୍ମିଅଛି । ତେଣୁ ସେ ତାହାକୁ ପୂର୍ବକଥା ଜଣାଇ ଦେବେ ବୋଲି କୋଳାହଳ ପର୍ବତକୁ ଗଲା । ସେଠାରେ ସେହି ଶୃଗାଳକୁ ଦେଖି ବୋଇଲା—ମହାରାଜ ! ତୁମ୍ଭେ ମୋର ପତି, ପୂର୍ବ ଜନ୍ମରେ ରାଜା ହୋଇଥିଲ । ପାଷାଣ୍ଡ ସମ୍ଭାଷଣ ପାପରୁ କୁକୁର ଯୋନିରେ ଜନ୍ମିଲ, କୁକୁର ଦେହ ଛାଡ଼ି ଏବେ ଶୃଗାଳ ହୋଇଅଛ । ତୁମ୍ଭେ କୁକୁର ହୋଇ ଜନ୍ମିଥିବା ସମୟରେ ମୁଁ ତୁମ୍ଭଙ୍କୁ ଗତ ଜନ୍ମକଥା ସ୍ମରଣ କରାଇ ଦେଇଥିଲି । ତୁମ୍ଭେ କଣ ତାହା ମନରୁ ପାସୋରି ଦେଲ କି ? ଏହା ଶୁଣି ସେ ଶୃଗାଳ କ୍ଷଣକାଳ ମୌନ ହୋଇ ରହିବାରୁ ପୂର୍ବ କଥାଯାକ ଜାଣିପାରି ଅହାର ପାଣି ଅଉ ଖାଇଲା

ନାହିଁ । ରାଜକନ୍ୟା ସେଠାରୁ ପିତାଘରକୁ ଫେରି ଆସିଲା । ଶୃଗାଳଟି ନ ଖାଇ ନ ପିଇ ସେହି ବନ ମଧ୍ୟରେ ଶୃଗାଳ ଦେହ ଛାଡ଼ି ପୁଣି ଗୋଟିଏ ବୃକ ହୋଇ ଜନ୍ମଗ୍ରହଣ କଲା । ତହିଁ ପରେ କାଶୀରାଜା କନ୍ୟା ତାହା ଜାଣିପାରି ସେହି ନିର୍ଜନ ଅରଣ୍ୟକୁ ଯାଇ ବୃକରୂପୀ ସ୍ୱାମୀକୁ ଦେଖି କହିଲା—ମହାରାଜ ! ଆପଣ ବୃକ ନୁହଁ । କିନ୍ତୁ ପରମ ଧାର୍ମିକ ଶତଧନ୍ୱ ରାଜା ଅଟ । କୁକୁର ଏବଂ ଶୃଗାଳ ଯୋନିରେ ଜନ୍ମିଥିବା ସମୟରେ ମୁଁ ତୁମ୍ଭଙ୍କୁ ପୂର୍ବ ଜନ୍ମକଥା ସ୍ମରଣ କରାଇ ଦେଇଥିଲି, ତାହା କଣ ମନରୁ ପାସୋରି ଦେଲ କି ? ଏବେ ପୂର୍ବ ଚରିତ ସୁମରଣା କରି ସମୟୋଚିତ କାର୍ଯ୍ୟ କର । ଏହା କହି ସେ କନ୍ୟା ପିତା ଗୃହକୁ ଫେରିଗଲା । ବୃକରୂପୀ ରାଜା ଏକଥା ଶୁଣିବା ମାତ୍ରେ ବୃକ ଦେହ ପରିତ୍ୟାଗ କରି ଗୋଟିଏ କାକ ହୋଇ ଜନ୍ମ ହେଲା । ତହିଁପରେ ସେ ରାଜକୁମାରୀ ତାହା ଜାଣିପାରି ସେହି କାକପକ୍ଷୀ ନିକଟକୁ ଯାଇ କହିଲା—ମହାରାଜ, ଆପଣ କାକପକ୍ଷୀ ନୁହଁ, କିନ୍ତୁ ଧାର୍ମିକ ଶିରୋମଣି ଶତଧନ୍ୱ ରାଜା ଅଟ । ତୀର୍ଥ ସ୍ନାନାନ୍ତର ପାଷାଣ୍ଡ ସମ୍ଭାଷଣ କରିବା ପାପରୁ କୁକୁର ଶୃଗାଳ ଏବଂ ବୃକ ଯୋନିରେ ଜନ୍ମିଥିଲ । ମୁଁ ତୁମ୍ଭର ପ୍ରିୟବ୍ରତା ଭାର୍ଯ୍ୟା । ବର୍ତ୍ତମାନ ରାଜକୁମାରୀ ହୋଇ ଜନ୍ମିଥିବାରୁ ପୂର୍ବକଥା ଜାଣିପାରି ତୁମ୍ଭଙ୍କୁ ସେହି କୁକୁରାଦି ତିନି ଜନ୍ମର ଗତକଥା ସ୍ମରଣ କରାଇ ଦେଇଥିଲି ଏବେ ତୁମ୍ଭେ ତାହା ପାସୋରି ଦେଲ କି ? ମୁଁ ପୁନରପି କହୁଅଛି ଯେ କାକ ଚେଷ୍ଟା ଛାଡ଼ି ସମୟୋଚିତ କାର୍ଯ୍ୟ କର । ତୁମ୍ଭେ ରାଜା ହୋଇଥିବା ସମୟରେ ଅଶେଷ ପାରିଦଣ୍ଡ ରାଜା ତୁମ୍ଭଙ୍କୁ ବଳି ଦାନ କରୁଥିଲେ । ସେହି ପାପରୁ ତୁମ୍ଭେ ଏବେ କାକ ଜନ୍ମ ପାଇ ବଳିଭୁକ୍ ବୋଲାଉଅଛ, ଏଥିକୁ ବିଚାର କର । ଏହା କହି ସେ ରାଜକୁମାରୀ ପିତୃଗୃହକୁ ଚାଲିଗଲା । ତହିଁ ପରେ ସେ କାକ ଅନାହାରରେ

ପ୍ରାଣତ୍ୟାଗ କରି ଗୋଟିଏ ଗୃଧ୍ର ହୋଇ ବନ୍ଧ୍ୟ ପର୍ବତରେ ଜନ୍ମଗ୍ରହଣ କଲା । ବର୍ଷକ ଉତ୍ତାରୁ ସେ ରାଜକୁମାରୀ ଦିବ୍ୟ ଦୃଷ୍ଟିରେ ଜାଣି ପାରିଲା ଯେ ତାର ସ୍ୱାମୀ କାକ ଦେହ ଛାଡ଼ି ବନ୍ଧ୍ୟ ପର୍ବତରେ ଗୃଧ୍ର ହୋଇଅଛି । ତେଣୁ ସେ ପୂର୍ବ ଜନ୍ମକଥା ସ୍ମରଣ କରାଇ ଦେବାପାଇଁ ବନ୍ଧ୍ୟପର୍ବତକୁ ଯାଇ ସେହି ଗୃଧ୍ରକୁ ଦେଖି କହିଲା—ହେ ଧର୍ମପରାୟଣ ମହାରାଜ ! ଆପଣ ପାଷଣ୍ଡ ସମ୍ଭାଷଣ ପାପରୁ ଗୃଧ୍ରହୋଇ ଜନ୍ମିଅଛ ! ତୁମ୍ଭେ ପୂର୍ବଜନ୍ମରେ ଶତଧନୁ ନାମକ ବିଖ୍ୟାତ ରାଜା ଥିଲ । ତହିଁପରେ କୁକୁର, ଶୃଗାଳ, ବୃକ ଏବଂ କାକ ହୋଇ ଜନ୍ମ ହେଲ । ମୁଁ ତୁମ୍ଭଙ୍କୁ ସେ ସବୁ ଜନ୍ମରେ ପୂର୍ବ ଚରିତ ସ୍ମରଣ କରାଇ ଦେଇଥିଲି, ଏବେ ତାହା ମନରୁ ପାସୋରି ଦେଲ କି ? ବର୍ତ୍ତମାନ ଗୃଧ୍ର ଚେଷ୍ଟା ଛାଡ଼ି ସାଧୁମାର୍ଗ ଆଚରଣ କର । ଋଷିମାନେ ଲେଖିଅଛନ୍ତି—ଯାତ୍ୟ-ଧୋଧୋ ବ୍ରଜତ୍ୟୁଚ୍ଚୈନରଃ ପ୍ରୈବେବ କର୍ମଭିଃ କୂପସ୍ୟ ଖନତା ଯଦ୍ୱତ୍ ପ୍ରାକାର ସେବ୍ୟ କାରକଃ । ମନୁଷ୍ୟ ନିଜ କର୍ମଦ୍ୱାରା ଅଧୋଗତି ଏବଂ ଊର୍ଦ୍ଧ୍ୱଗତି ଲାଭ କରେ, ଏ ବିଷୟରେ ଦୃଷ୍ଟାନ୍ତ ଦେଖ ଯେ, କୂଅ ଖୋଳିବା ଲୋକ କ୍ରମେ କ୍ରମେ ତଳକୁ ଯାଉଅଛି, ପାଚେରି ଗଢ଼ିବା ଲୋକ କ୍ରମେ କ୍ରମେ ଉପରକୁ ଉଠୁଅଛି । ଏକଥା ବିଚାରକରି ତୁମ୍ଭେ ଆତ୍ମାର ହିତ ସାଧନ କର । ବର୍ତ୍ତମାନ ଗୃଧ୍ର-ଯୋନିରେ ଜନ୍ମି ପକ୍ଷ ସାହାଯ୍ୟ ପାଇଅଛ । ତେଣୁ ମୁଁ କହୁଅଛି ଆକାଶ ପଥରେ ଉଡ଼ିଯାଇ ସେତୁବନ୍ଧରେ ସ୍ନାନକରି ରାମେଶ୍ୱରଙ୍କ ଦର୍ଶନ କର । ତା ହେଲେ ଆଉ ଗୋଟିଏ ଜନ୍ମରେ ନିଶ୍ଚୟ ଉତ୍ତମ ଗତି ପାଇବ । ଏହା କହି ସେ ରାଜକୁମାରୀ ପିତାଗୃହକୁ ଲେଉଟି ଗଲା । ଗୃଧ୍ର ତାହା ଶୁଣିବା ମାତ୍ରେ ପୂର୍ବଜନ୍ମ କଥାଯାକ ସ୍ମରଣ କରି ପ୍ରହୃଷ୍ଟଚିତ୍ତ ବନ୍ଧ୍ୟାଚଳ ଛାଡ଼ି ଆକାଶ ପଥରେ ଉଡ଼ିଯାଇ ସେତୁବନ୍ଧରେ ପ୍ରବେଶ ହେଲା । ସେଠାକୁ ଯାଇ ଧନୁଷ୍କୋଟି

ତୀର୍ଥରେ ସ୍ନାନ କରି ରାମେଶ୍ୱରଙ୍କ ମନ୍ଦିରକୁ ଗୃହିଁ ଗୃହିଁ ଅନାହାରରେ ଦେହତ୍ୟାଗ କଲା । ସେତୁବନ୍ଧ ଓ ରାମେଶ୍ୱରଙ୍କ ମହିମାରୁ ନିଷ୍ପାପ ହୋଇ ସେ ଗୃଧ୍ର ମିଥିଳାଧିପତି ଜନକ ରାଜାଙ୍କର ପୁତ୍ରରୂପେ ଜନ୍ମଗ୍ରହଣ କଲା । ସେହି ରାଜକୁମାରଙ୍କ ଯୌବନାବସ୍ଥା ପ୍ରବେଶ ହେବାର ଜାଣି କାଶୀରାଜା ଦୁହିତା ତାଙ୍କର ପିତାଙ୍କୁ କହିଲା— ଏଥର ମୋପାଇଁ ସ୍ୱୟମ୍ବର ସଭା ନିମନ୍ତ୍ରଣ କର । ମୁଁ ମୋର ଇଚ୍ଛା ଅନୁସାରେ ଗୋଟିଏ ରାଜପୁତ୍ରଙ୍କୁ ବରଣମାଳା ଦେଇ ବରିବି । ଏହା ଶୁଣି କାଶୀରାଜା ଆନନ୍ଦିତ ହୋଇ କନ୍ୟା ପାଇଁ ସ୍ୱୟମ୍ବର ସଭା ନିମନ୍ତ୍ରଣ କଲେ । ସେ ସଭାରେ ଗୃହ ଓ ଣା ଲକ୍ଷ ରାଜପୁତ୍ର ଆସି ଉପସ୍ଥିତ ହୋଇଥିଲେ । କାଶୀରାଜକନ୍ୟା ସୁଲୋଚନା ସମସ୍ତଙ୍କ ସାକ୍ଷାତରେ ଜନକ ରାଜାଙ୍କ ପୁତ୍ରଙ୍କୁ ତାଙ୍କର ପତି ବୋଲି ଚିହ୍ନିପାରି ବରଣମାଳା ଦେଇ ବରିଲେ । ନାନା ଉତ୍ସବରେ ଦୁହିଙ୍କର ବିବାହ ହୋଇଲା । ସୁଲୋଚନା ନିଜର ସ୍ୱାମୀଙ୍କୁ ପାଇ ପରମ ସୁଖରେ ସମୟ ଯାପନ କଲେ । ଅରେ ଅବୋଲକର ଏ ତୀର୍ଥର ମହିମା ବ୍ରହ୍ମାଙ୍କୁ ଅଗୋଚର । ମାତ୍ର ତୁ ପଗ୍ଭରିବାରୁ ମୁଁ ଯାହା ଜାଣିଥିଲି, ତୋତେ କହିଲି । ଏଠାରୁ ଆମ୍ଭର ଗୃହରଧ ପୂର୍ଣ୍ଣ ହେଲା । ଉଠ ଏଥର ନିଜ ରାଜ୍ୟକୁ ଯିବା । ଏହିଠାରେ ଅବୋଲକର କାହାଣୀ ସମସ୍ତ ହେଲା ।

ଶୁଭଂ ଭବତୁ

**ସ ମା ପ୍ତ**

ମୁଦ୍ରାକର—ଶ୍ରୀ ଲକ୍ଷ୍ମୀଧର ଗଡ଼ନାୟକ, ଶ୍ରୀରାଧାରମଣ (
କଟକ-୨—୧୯୬୦